# ଜାପାନୀଙ୍କ
# ପୁଣି
# ଶ୍ରେଷ୍ଠ ଗଳ୍ପ



# ଜାପାନିବାବୁଙ୍କ ପୁଣି କେତୋଟି ଗଳ୍ପ

ଲେଖକ :
ସୁଧୀର କୁମାର ବନ୍ଦ୍ୟୋପାଧ୍ୟାୟ, ନାରାୟଣ
( ଜାପାନ )

ପ୍ରକାଶକ : ମୃଗୟା

ପ୍ରଥମ ମୁଦ୍ରଣ :
ନଭେମ୍ବର – ୧୯୯୦

ଲିପିକାର :
ବଣ୍ଟଶ୍ରୀ ପ୍ରେସ – ବାଲେଶ୍ବର

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ପଚଶ ଟଙ୍କା ମାତ୍ର

# JAPANI BABUNKA PUNI KETOTI GALPA

By :
Sudhir Kumar Bijoyendra Narayana
( JAPANI )

Published By :
MRUGAYA

First Edition :
November - 1990

Printed at :
BISWASREE PRESS
F. M. Senapati Road
Balasore

Price :
Rupees Twentyfive Only

ବନ୍ଧୀ,

ପଚଶ ବର୍ଷର
ସବୁ ଅନୁଭୂତିର ସ୍ୱାକ୍ଷର
ତମର ହାତରେ—

ମୁଁ

# ସୂଚୀ





# ଅମୃତର ସନ୍ଧାନ

ବିଜନବାବୁ ଅନିଚ୍ଛା ସତ୍ତ୍ୱେ ପାଦ ଚକୋଇଲେ ସାଇକେଲ ପେଡ଼ାଲ ଉପରେ। ସତରେ ସମୟ ଆଉ ନାହିଁ, ଅଙ୍କ କାର୍ଡ ସବୁ ଦେବାକୁ ପଡ଼ିବ, ନହେଲେ ଆଉ ବେଳ ନାହିଁ। ଯେତେ ଦରକାରୀ କାମ ଥିଲେ ବି ସହକର୍ମୀ ଲେକ୍ଚରରମାନଙ୍କ ଘରକୁ ସନ୍ଧ୍ୟାବେଳେ ଯିବାକୁ ସବୁବେଳେ ସେ ଏଭଏଡ଼ କରିଛନ୍ତି। ପୁରୁଣା ବନ୍ଧୁ ସବୁ କିଏ କୁଆଡ଼େ ଗଲେଣି। ଯେଉଁମାନେ ତାଙ୍କର ପରି କଲେଜରେ "ପାଠ ପଢ଼େଇବା ଧର୍ମ" ବୋଲି ମନେକରି ଜୀବନ ବିତେଇ ଆସିଛନ୍ତି, ସେମାନଙ୍କ ଭିତରୁ କିଏ ହୁଏତ ନୂତନ ପନ୍ଥାର ଆଶ୍ରୟ ନ ନେଇଛନ୍ତି; ତା ନୁହେଁ। କଣ କରାଯିବ, ସମୟର ତାଡ଼ନାରେ ବାଧ୍ୟ ବି ହୋଇ ଥାଇ ପାରନ୍ତି। ତଥାପି ଯେନତେନ ପ୍ରକାର କୋର୍ସ ଶେଷ କରି ପିଲାଙ୍କୁ ଟ୍ୟୁସନ ନିମନ୍ତ୍ରଣ ଦେବାର ସେ ପକ୍ଷପାତୀ ନୁହନ୍ତି। ଏହି ନୂଆ ଉପାୟଟା ହୁଏତ ବର୍ତ୍ତମାନ ଶିକ୍ଷକ-ସମାଜର ଏକ ଅଭିନବ ଆବିଷ୍କାର, କିନ୍ତୁ ସେ କର୍ତ୍ତବ୍ୟ ଓ ବିବେକର ତାଡ଼ନାକୁ ଆଗରେ ରଖି ବେଶ୍ ମାନସିକ ଶାନ୍ତିରେ ଅଛନ୍ତି।

କଲେଜ ଫଙ୍କ୍ସନରେ ବନ୍ଧୁପତ୍ନୀମାନଙ୍କ ନୂଆ ଗହଣା ବା ନୂଆ ନୂଆ ଲୁଗା ଦେଖି ଗୃହିଣୀଙ୍କ ଭାବାନ୍ତର ଯେ ସେ ଲକ୍ଷ୍ୟକରି ନାହାନ୍ତି ତା ନୁହେଁ,

କିନ୍ତୁ ସେ ଠିକ୍ ଜାଣିଛନ୍ତି ଗୃହିଣୀଙ୍କ ଅବଦାନର ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ, କାରଣ ସେ ସତରେ ତାଙ୍କ ଅର୍ଦ୍ଧାଙ୍ଗିନୀ । ତିନୋଟି ସନ୍ତାନର ମାଆ ହୋଇ ସୁସ୍ଥ ସବଳ କରି ଗଢ଼ି ତୋଳିଛନ୍ତି ପୁଅ-କନ୍ୟାମାନଙ୍କୁ; ଆଉ ମା' ସଙ୍ଗେ ସଙ୍ଗେ ପ୍ରେମିକାସ୍ୱାମୀର ମଧ୍ୟ ସ୍ଥାନରୁ ଚୂନ ଟିକେ ଖସିବାକୁ ଦେଇ ନାହାନ୍ତି ସେ । ସଂସାର ବେଶ୍ ସୁରୁଖୁରୁରେ କଟିଆସିଛି ରଞ୍ଜନବାବୁଙ୍କ ।

ଆଧୁନିକ 'ଅଙ୍କ' ସତରେ ଅଙ୍କମାଷ୍ଟରଙ୍କ ବ୍ୟାଙ୍କ ଅଙ୍କ ବଢ଼ାଇବାକୁ ସାହାଯ୍ୟ କରେ । ଅଙ୍କ ଶିକ୍ଷକଙ୍କ ଦ୍ୱାରକୁ ଯିବାକୁ ସେ ବିଶେଷ ଦ୍ୱିଧା ବୋଧ କରୁଥିଲେ । କାରଣ କଲେଜ ପରେ ପରେ ୫ଟା ଠାରୁ ତାଙ୍କ ଘରେ ଧଣ୍ଡାଓ୍ୱାର ପିଲାଙ୍କ ଭିଡ଼, ଏଣୁ ଅନ୍ୟମାନଙ୍କ ପାଇଁ ଟିକିଏ ସମୟ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତଥାପି ଯିବାକୁ ହେବ । କୁଳମଣିବାବୁଙ୍କୁ ସାଙ୍ଗରେ ବରଂ ନେଇଗଲେ ସୁବିଧା ହେବ । ତାଙ୍କ କ୍ଲାସ ସବୁ ରାତି ୯ଟା ପରେ ଶେଷ—ସେ ସାନ୍ଧ୍ୟ କଲେଜ ଶିକ୍ଷକ, ଏଣୁ ତାଙ୍କ ଟ୍ୟୁସନ ସବୁ ଦିନବେଳେ । ଅବଶ୍ୟ ଇକନମିକ୍ସକୁ ଏତେ ଭିଡ଼ ନାହିଁ । କୁଳମଣିବାବୁ ଟ୍ୟୁସନ କଲେବି ବିଶେଷ ଆପତ୍ତି ନାହିଁ, କାରଣ ସେ ଅଭାବୀ ଲୋକ । ରୋଗାକ୍ରାନ୍ତ ପିତାମାତାଙ୍କ ସାଙ୍ଗକୁ ଘରେ ଦୁଇଟା ପାଠ ପଢ଼ୁଛନ୍ତି, ଭଉଣୀ ଗୋଟେ ବାହା ହୋଇନି—ଏତେ ବଡ଼ ସଂସାର । ଅଭାବୀ ବନ୍ଧୁଙ୍କ ପ୍ରତି ସମସ୍ତ ସହାନୁଭୂତି ନେଇ ରଞ୍ଜନବାବୁ ବରଂ ବେଳେ ବେଳେ ସାନ୍ଧ୍ୟ କଲେଜର କମନରୁମ୍‌ରୁ କୁଳମଣିବାବୁଙ୍କ ସହ ତାଙ୍କ ଘର ଆଡ଼େ ଚଢ଼ି ପଡନ୍ତି । ବୁଢ଼ାବାପାଙ୍କ ବୟସ ଅଶୀ ଅତିକ୍ରାନ୍ତ ହେଲେ ମଧ୍ୟ ଭଲ ଗପ ଯୋଡ଼ି ପାରନ୍ତି ସେ । ଉଠିବସି ନ ପାରିଲେ କଣ ହେବ, ଥରେ ବୁଢ଼ା ବସିଗଲେ ଘଟଣାବହୁଳ ଜୀବନର କେତୋଟି ପୃଷ୍ଠା ଏମିତି ରଙ୍ଗ ଲଗେଇ କହିପାରନ୍ତି ଯେ ଉଠିବାକୁ ଇଚ୍ଛା ହୁଏନା । ସେଦିନ ଗଳ୍ପ କରୁ କରୁ କୋଉ କଥାରୁ ଟିଉସନ କରୁଥିବା ଶିକ୍ଷକଙ୍କ ପ୍ରତି ରଞ୍ଜନବାବୁଙ୍କ କଟୂକ୍ତି ଶୁଣି ସେ ସପକ୍ଷରେ କହିବାକୁ ଯାଇ କହିଲେ—

'ତମେ ଯେହେତୁ କୁଳମଣି କଥା ଜାଣିଛ ଏଣୁ ତାକୁ ସପୋର୍ଟ କରୁଛ । ହୁଏତ ଅନ୍ୟମାନଙ୍କର ମଧ୍ୟ ସେଇମିତ କଷ୍ଟ ଦରକାର ଥିବ ।'

'ନାଇଁ ମଉସା, ଆପଣ କହୁଛନ୍ତି ଯିନା'; ଯୋଡ଼ିଲେ ବ୍ରଜନବାବୁ; 'ଦେଖିବାକୁ ଗଲେ ଅଭାବର ସୀମା ନାହିଁ । ଆଶା କଲେ, ଅଭାବ ସୀମାରେଖା ଡ଼େଇଁଡେଇଁ ଆଗକୁ ଆଗକୁ ଚାଲିବ ।' ଟିକଏ ରହି ପୁଣି ଆରମ୍ଭ କଲେ, 'ଆମ ରଙ୍ଗନାଥନବାବୁଙ୍କ କଥା ଦେଖନ୍ତୁ, Mathematicsରେ ସକାଳେ ୩ଟା ଗ୍ରୁପ ଓ ସନ୍ଧ୍ୟାବେଳେ ୪ଟା ଗ୍ରୁପ—ତା'ମାନେ ମାସକୁ ଖୁବ୍ କମରେ ନହଜାର ଟଙ୍କା ।'

ମଉସାଙ୍କ ଆଖି ବଡ଼ ହୋଇଗଲେ । ସେ ହୁଏତ ତାଙ୍କ ଜବଦଶାରେ ଟଙ୍କାର ମୂଲ୍ୟରେ ନହଜାର ଟଙ୍କାକୁ ମୂଲେଇ ନେଇ ଆଖି ବେତେବଡ଼ କଲେ । ତେବେ ଆଜି ଟଙ୍କାର ଯେତେ କମ୍ ମୂଲ୍ୟ ହେଲେବ କ୍ଲେର୍କ୍‌ଟର ଜୀବନରେ ମାସକୁ ଏତେ ଗୁଡ଼ାଏ ଟଙ୍କା ସ୍ୱପ୍ନ ବାହାରେ ନିଶ୍ଚୟ ।

କୁଳମଣିବାବୁ ହଠାତ୍ ଏମିତ ତରତର୍କା ହୋଇଯିବ ବୋଲି ଆଶା କରିନଥିଲେ, କାରଣ ବ୍ରଜନବାବୁ କେବେ ଅନ୍ୟର ହାନିଲାଭ ଚନ୍ତା କରନ୍ତିନ, ଆଉ କହିବା କହିବାତ ଦୂରର କଥା । ତେବେ ମାସକୁ ନହଜାର ଶୁଣି ତାଙ୍କ ମନଟା ବ କେମିତ ଆମ୍ଫି କେଇ ଗଲା । କହିଲେ—

"ସତତ; ସେ ଏତେ ଗୁଡ଼ାଏ ଉପ୍ପାଦନ କରୁଛି ନା ?"

ଶୀଘ୍ର ପାନ ଆଣିବାକୁ କହି ପୁଣି ଯୋଡ଼ିଲେ "କତ୍ତୃ କ ଜୀବନ କହିଲେ ବ୍ରଜନବାବୁ ? କଲେଜରେ ପ୍ରିନ୍‌ସିପାଲ୍‌ଠୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ଛୁ-ଛୁକର କରନ୍ତି । ପିଲାଏ ବାଧ୍ୟ ହୋଇ ପଢ଼ିବାକୁ ଯାଆନ୍ତି ଯିନା, ତେହେଲେ କେହି କଣ ଦେଖିଛିଏ ଭଲ କହେ ତା ବିଷୟରେ !"

ଭଜନବାବୁ ଏଇ ସାମାନ୍ୟ ନୀରବତା ଭିତରେ ପରଶ୍ରୀକାତରତାର ଭାବ ଲୁଚାଇ ନେଇଥିଲେ । ମନେ ମନେ ଲଜ୍ଜିତ ହେଲେ ସେ, ଅନ୍ୟର ସୁଖ ସମ୍ଭୋଗ ନେଇ ତାଙ୍କ ମନରେ ଏପରି ଚିନ୍ତାଧାରା ଏକପ୍ରକାର 'ଅସୂୟା' କହିଲେ ଅତ୍ୟୁକ୍ତି ହେବନି, ଏବଂ ତାର ପ୍ରକାଶ ଆଜି କୁଳମଣିଙ୍କ ଠାରେ । ସେ ନିଜକୁ ଲଜ୍ଜିତ ଅନୁଭବ କଲେ । କହିଲେ "ଛାଡ଼ ସେ କଥା; ମଉସା ଯା କହିଲେ ସତ; ରଙ୍ଗନାଥନର ମଧ୍ୟ କଣ ଦରକାର ଥିବ, ନ ହେଲେ ଏପରି ହାଡ଼ଭଙ୍ଗା ପରିଶ୍ରମ କରନ୍ତା କାହିଁକି ?"

କୁଳମଣିବାବୁ ଟିକିଏ ହସିଲେ । ତାଙ୍କ ହସ ଦେଖି ଭଜନବାବୁ ପଚାରିଲେ—

"କଣ ହସିଲେ ଯେ ?"

"ନା-'ଦରକାର' ବିଷୟରେ ଆପଣ ଯେ କହିଲେ 'ଆଶା' କଥା, ସେଇଟା ପ୍ରକୃତ ଠିକ୍, ଆଶାର ଶେଷ ନାହିଁ । ରଙ୍ଗନାଥନ ଭାଇଜାଗ୍‌ରେ ଘର କରିଛି, ଏବେ ଭୁବନେଶ୍ୱରରେ ଘର କରୁଛି ବୋଲି ଶୁଣୁଥିଲି ।"

ଭଜନବାବୁ ଭାବୁଥିଲେ, ଗାଁ ଘରର ମରାମତି ଅଭାବରୁ ପଛପୁରଟାର ଚାଳ ନଇଁ ପଡିଲାଣି । ରିଟାୟାର କଲାବେଳକୁ ମୁଣ୍ଡ ଗୁଞ୍ଜିବାକୁ ସେଇ ଗାଁ ଘରଟି ଏକମାତ୍ର ଆସ୍ଥାନ । ଏଣେ ପୁଅ ଦିଟା ଫାଷ୍ଟ ଡିଭିଜନର ପାସ କରି ମଧ୍ୟ କେଉଁ ଗୋଟେ ଏଣ୍ଟ୍ରାନ୍ସ ପାଉନାହାନ୍ତି ଯେ ଏମ୍: ଏସ୍: ସି: ପଢ଼ିବାକୁ ବାଧ ହେଲେଣି ।

କୁଳମଣିବାବୁଙ୍କୁ ସାଙ୍ଗ କରିବାକୁ ଯାଇ ସେ ସାନ୍ଧ୍ୟ କଲେଜର କମନରୁମ୍‌ରେ ପହଞ୍ଚିଲାବେଳକୁ କେହି ନାହାନ୍ତି । ଆଜି କ'ଣ ପାଇଁ ଶେଷ ପିରିଅଡ୍ ଦୁଇଟା ଅଫ୍ ହୋଇ ଯାଇଛି । ଫେରିବାବେଳକୁ ଗେଟ୍

ପାଖରେ ପ୍ରିନ୍ସିପାଲ୍ ରାଧାରମଣବାବୁଙ୍କ ହାବୁଡ଼ରେ ପଡ଼ିଗଲେ ସେ । ମନେ ମନେ ବିପତ୍ତି ଗଣିଲେ-କାର୍ଡ଼ ଗଣ୍ଡାକ ବାଣ୍ଟିବା ସମ୍ଭବନ ଆଜ । ଝିଅ ବାହାଘର ଆଉ ଗୁଣଟା ଦନ ବାକ । ରାଧାରମଣବାବୁ, ସେ ଗଳ୍ପ ଆରମ୍ଭ କଲାବେଳକୁ ଶଡାର; ଆଉ ଆଜ ମଧ୍ୟ । ଏଇ କଥାଟାର ଚେର ଯେ କେତେ ତଳକୁ, ରାଧାରମଣବାବୁ ସବୁଦନ ପର ଯଦ ସେକଥା ଆରମ୍ଭ କରନ୍ତ ତେବେ ସନ୍ଧ୍ୟାଟା ଗଲ ।

ନମସ୍କାର କରବାକୁ ଯାଇ ବ୍ରଜନବାବୁ ଖସିଯିବା ମତଲବରେ ଆରମ୍ଭ କଲେ—

"ଆଜ ଦୁଇ ଘଣ୍ଟା ଲୋଡ଼୍ ସେଡ଼ିଙ୍ଗ, ମୋ ପାଖରେ ସାର୍ ଟର୍ଚ୍ଚ ନାହିଁ । ରଙ୍ଗନାଥନଗର ଘରକୁ ବାହାରଚ । ଆପଣ ଆଗେ ଆଗେ ଚାଲନ୍ତୁ, ମୁଁ ଆପଣଙ୍କ ସାଇକେଲ ପଛେ ପଛେ ଚାଲଯିବ ।"

"କଣ କହୋ; ତମ କାର୍ଡ ବଣ୍ଟା ସରନାକ ?"

"ନଜେ ଦେବ ବୋଲ ଏତକ ଡେରି ହେଲା । ପିଲାଙ୍କ ହାତରେ ପଠାଇ ଦେଇଥିଲେ ଚାଲଥାନ୍ତା ଯେ—"

ତାଙ୍କ କଥାରେ ବାଧାଦେଇ ସାଇକେଲରେ ଉଠିବାକୁ ଯାଇ ରାଧାରମଣ କହିଲେ—

"ହଇ ହୋ ବ୍ରଜନବାବୁ, ଏତେ ବ୍ୟସ୍ତ ହୋଇ ଝିଅ ବାହାଘରଟା ଠିକ୍ କର ପକାଇଲେ କାହିଁକ କହିଲେ ? ଏଇଟା ବୟସ ପରର ଅଭାବ ହେବ ବୋଧହୁଏ । କଣ ଥାର୍ଡ ଇୟରକୁ ଗଲା ପରା ?"

"ହଁ ଯେ, ଅଭଦ୍ରା ଲୋକ। ପାଞ୍ଚଟିଏ ପାଇଗଲେ କାମ ସାରଦେବା କଥା।"

"ହେଲେ ତମ ଝିଅକୁ ପାଞ୍ଚଟି ହେଲାନ ହେ!"

କରାଣି ଗୃହକର୍ତ୍ତା। ସ୍ତ୍ରୀ ପିଲାଏ ବାହାଘର ଠିକ୍ ହେଲା ବୋଲି ଯେଉଁ କଥାଟା ଉପରେ ତାଙ୍କୁ ଖୁଣ୍ଟା ଦେଇ ଆସୁଛନ୍ତି, ସେ କଥାଟା ବ୍ରଜନବାବୁଙ୍କୁ ହଠାତ୍ ବାଧିଲା। କହିଲେ—

"କରାଣି କଣ ବାହା ହେବନି?"

କଥାଟା ଟିକେ ରୁକ୍ଷ ହୋଇଗଲା ମନେକରି ପୁଣି ସେ ପୁଣି ଯୋଡ଼ିଲେ—"ଖୁବ୍ ଭଲପିଲା। ଭଲ ସମ୍ଭ୍ରାନ୍ତ ଘର। କରାଣି ବୋଲି ଆପଣ ଯାହା ଶୁଣିଛନ୍ତି ତା' ସତହେଲେବି ସେ ଗୋଟେ ପ୍ରାଇଭେଟ୍ କମ୍ପାନୀରେ କାମକରେ, ଯେଉଁଥିରେ ତାର ନଜର ସେମ୍ୱାର ଅଛି। କାମ ଶିଖିଗଲେ ସେହି ବଙ୍ଗାଳୀ ଯୁବା ହାତରେ ମ୍ୟାନେଜମେଣ୍ଟ ଭାର ଦେଇ ତା ନିଜଦେଶକୁ ଚାଲିଯିବ।"

ରାଧାରମଣବାବୁ କହିଲେ, "ଆଜି ସୁରଥବାବୁ ଆସିଥିଲେ। ତାଙ୍କ ଝିଅ ପାଇଁ ଦେଖାଦେଖି ଚାଲିଛି। ପିଲାଟି ଇଲେକଟ୍ରି ଡିପାର୍ଟମେଣ୍ଟରେ ଏସ୍.ଡ଼.ଓ."—ଟିକଏ ରହି ପୁଣି କହିଲେ—"ରଙ୍ଗନାଥନର ଝିଅ ପାଇଁ ତ ଆଇ.ପି.ଏସ୍. ପିଲାଟିଏ ଠିକ୍ ହୋଇଗଲାଣି। ଶୁଣିଥିବ ଏବର୍ଷ ଇଞ୍ଜିନିୟରିଂରେ ଭର୍ତ୍ତି କଲା ପୁଅକୁ। ଟଙ୍କା ପଇସା ଯୋଗାଡ଼ କଲେ ନଭେମ୍ବରକୁ ତା ଝିଅ ବାହାଘର କରିବ।"

ବ୍ରଜନବାବୁ ଆଶ୍ଚର୍ଯ୍ୟ ହେଲେ "ରଙ୍ଗନାଥନର ପୁଣି ଟଙ୍କାର କଣ ଅଭାବ!"

ରାଧାରମଣ ସାଇକେଲଟିକୁ ଟିକେ ଧୀରେ କରି ବ୍ରଜନବାବୁ ଲଗି ଆସିବାରୁ ଟିକେ ଧୀମା ସ୍ୱରରେ କହିଲେ—"ଆଜକାଲି ବାଙ୍ଗାଲୋର ଆଡେ ଗୋଟେ ଇଞ୍ଜିନିୟରିଂ କଲେଜରେ ଭର୍ତ୍ତି କରିବାକୁ ଷାଠିଏରୁ ସତୁରି ହଜାର ଡୋନେସନ ପଡୁଚି । ସେଇଥିପାଇଁ ରଙ୍ଗନାଥନ ବାହାଦୁର ଆଉ ୨ବର୍ଷକୁ ଘୁଞ୍ଚାଇଚ ।"

ବ୍ରଜନବାବୁ ମନେ ମନେ ହିସାବ କରୁଥିଲେ । ବାହାଘର ପାଇଁ ସ୍ତ୍ରୀଙ୍କର ପୈତୃକ ଗହଣାଗଡ଼କ ଯିବାପରେ ଜ: ପି: ଏଫ୍‌ରୁ ନେଇଥିବା ଧାର ଲୁଗାପଟା ଇତ୍ୟାଦି ପରେ ଅନ୍ୟାନ୍ୟ ଖର୍ଚ୍ଚକୁ ସବୁ କାଟଛାଟ କରେବ କଣ୍ଟେ କଣ୍ଟେ । ନହେଲେ ଶେଷକୁ ହାତ ଉଧାରି ପାଇଁ ରଘୁନାଥବାବୁଙ୍କୁ କହି ରଖିଛନ୍ତି ସେ । ରଘୁନାଥବାବୁ ବନ୍ଧୁମହଲରେ ଦରକାର ପଡ଼ିଲେ ଧାର ଦେବାକୁ ନାହିଁ କରନ୍ତିନି । ମାସ ଶେଷରେ ଦରମା ପାଇବା ଦିନ ଅବଶ୍ୟ ଇନଷ୍ଟଲମେଣ୍ଟ ସହ ସାମାନ୍ୟ ସୁଧ ପାଇଁ ସେ ଜଗି ବସିଥାନ୍ତି କମନରୁମ୍‌ରେ । ଟ୍ୟୁସନରୁ ଦୁଇପଇସା କରି ତାକୁ ସମସ୍ତଙ୍କ ସୁଖ ସମୃଦ୍ଧିରେ ସୁବ୍ୟବହାର କରି ପାରୁଥିବାରୁ ସେ ବନ୍ଧୁମହଲରେ ବେଶ୍ ମାନ୍ୟଗଣ୍ୟ ।

ରଙ୍ଗନାଥନବାବୁଙ୍କ ଦ୍ୱାର ମୁହଁରେ ସାଇକେଲ ରଖି କଲିଂବେଲ ଟିପିଲେ ସେ । ଚାକରଟିଏ ଆସି ଡ୍ରଇଂରୁମ୍‌ର କବାଟ ଖୋଲିଦେଲା । ଶ୍ରୀମତୀ ରଙ୍ଗନାଥନ ଆସି ସମ୍ବର୍ଦ୍ଧନା କରି ଟି: ଭି:ଟା ଖୋଲିଦେଇ କଫିର ବ୍ୟବସ୍ଥା କରିବାକୁ ଭିତରକୁ ଗଲେ । ପିଲାଙ୍କର ପାଠପଢ଼ାର ଗୁଣୁଗୁଣୁ ଶବ୍ଦ ଆସୁଥାଏ ଦାଖ ଘରଗୁଡ଼ାକରୁ ।

ଡ୍ରଇଂରୁମ୍‌ର ଗାଲିଚା ଉଢ଼େଇ ସୋଫା ଉପରେ ବସି ସାମ୍ନାରେ ରଙ୍ଗିନ ଟି: ଭି: ଦେଖୁଦେଖୁ ବ୍ରଜନବାବୁ ନିଜ ମନର ଦ୍ୱନ୍ଦ୍ୱକୁ ଠେଲି ଦେବାକୁ ଚେଷ୍ଟା କରୁଥିଲେ । ମନେପଡ଼ୁଥିଲା, ପଅରଦିନ ଇଂରାଜୀ ସେମିନାରରେ ପିଲାଏ ତାଙ୍କ ପିଛା ଲାଗିଥିଲେ । ତେଲ ଘଣ୍ଟାଏ ପାଇଁ ସେମାନେ ଆସିବାକୁ ଚାହୁଁଥିଲେ ଡ଼ାଉଟ୍‌କ୍ଲିଆର କରିବାକୁ ।

ଏତେଗୁଡ଼ାଏ ବର୍ଷ ଧରି କଲେଜର କର୍ତ୍ତବ୍ୟରେ ଅବହେଳା ନକରି ପାଠ ପଢ଼ାଇ ସେ ପିଲାଙ୍କୁ ଟ୍ୟୁସନ ହାତରୁ ମୁକ୍ତକରି ରଖି ଆସିଥିଲେ; କିନ୍ତୁ ହଠାତ୍ ଏବେ କାହିଁକି ତାଙ୍କ ପୁଅଙ୍କର ଟ୍ୟୁସନ ଦରକାର ପଡ଼ିଲା ? ଏ ଚିନ୍ତାର ବିଷ ଦଂଶନକୁ ରଙ୍ଗନାଥନର ଡ୍ରଇଂରୁମ୍‌ର ଗାଲିଚା; ସୋଫା ଆଉ ରଙ୍ଗିନ ଟି: ଭି: ଢାଙ୍କି ଦେବାକୁ ଚେଷ୍ଟା କଲା ବେଳକୁ ହାତର କାର୍ଡ଼ ଖଣ୍ଡିକରେ ଝିଅର ନାମଟି ପଢ଼ୁ ପଢ଼ୁ ସେ ପ୍ରକୃତିସ୍ଥ ହେଲେ ।

ଅନ୍ୟମାନଙ୍କର ଉତ୍ତରୋତ୍ତର ଉନ୍ନତି ହେଉ । ଦୁଇଟା କାହିଁକି ଆହୁରି ଦୁଇଟା ଘର ହେଉ । ଆଇ. ଏ ଏସ୍., ଆଇ. ପି. ଏସ୍. ଜୋଇଁ ହୁଅନ୍ତୁ, ଡାକ୍ତର-ଇଞ୍ଜିନିୟର ହୋଇ ପୁଅସବୁ ସମସ୍ତଙ୍କର ବାହାରନ୍ତୁ । ସମସ୍ତଙ୍କର ସୁଖ ସମ୍ଭୋଗ ସହ ସେ କିନ୍ତୁ କିରାଣୀ ଜୋଇଁ ଆଉ ସ୍କୁଲ୍ ବା ପ୍ରାଇଭେଟ କଲେଜର ଶିକ୍ଷକ-ପୁଅ ନେଇ ଗାଁ ଘରର ଭଙ୍ଗା ଚାଳ ତଳେ ସୁଖ ଓ ଶାନ୍ତିର ସ୍ୱପ୍ନ ଦେଖୁଥିଲେ । ସ୍ୱପ୍ନ ଦେଖୁଥିଲେ ବର୍ତ୍ତମାନ ଜୀବନର କର୍ତ୍ତବ୍ୟନିଷ୍ଠା ଆଉ ନିର୍ଲୋଭ ଭିତ୍ତି ଉପରେ ତାଙ୍କ ଜୀବନର ବାନପ୍ରସ୍ଥ ।

ସବୁ ଦ୍ୱନ୍ଦ୍ୱକୁ ମନରୁ ବିତାଡ଼ିତ କରି ସେ ଶାନ୍ତିର ନିଃଶ୍ୱାସ ମାରୁଥିଲେ । ମନେ ମନେ ହସୁଥିଲେ ସେ । ରଙ୍ଗନାଥନ ବ୍ୟସ୍ତ ହୋଇ ପିଲାଙ୍କୁ ଛାଡ଼ି ଫେରି ଆସୁ ଆସୁ ବିଜନବାବୁଙ୍କୁ ହସୁଥିବାର ଦେଖି ଭାବୁଥିଲେ "ପାଗଳା ଲୋକ ।" □ □

# ଦୂର ପର୍ବତ

ବନିତା ବର୍ଷାକୁ ଡ଼ରି ଯେତେ ନୁହେଁ, ସୁପ୍ରକାଶର ଅଫିସକୁ ଯିବାପାଇଁ ଇଚ୍ଛାକରି ରିକ୍ସାକୁ ଗେଟ୍ ଭିତରକୁ ଯିବାକୁ କହିଲା । ରିକ୍ସାକୁ ବିଦାକରି ସେ ବାରଣ୍ଡା ଉପରକୁ ଉଠିବାବେଳକୁ ସାମାନ୍ୟ ପବନ ସହ ବଡ଼ ବଡ଼ ଟୋପା ବେଶ୍ ଜୋରରେ ପଡ଼ିବା ଆରମ୍ଭ ହୋଇ ଯାଇଥିଲା । ବାରଣ୍ଡାରେ ଉଠିପଡ଼ିବା ବେଳକୁ ଯେଉଁମାନେ କଟକ ଯିବା ଲୋକ ତାଙ୍କ ଭିଡ଼ ଠେଲି ସେ ଭିତରକୁ ପଶି ଆସିବା ପରେ, ହଠାତ୍ କାହାକୁ କଣ ପଚାରିବ ଭାବିପାରିଲାନି । କାରଣ ବର୍ଷାକୁ ଡ଼ରି ଗୋଟେ ଅଫିସ ବାରଣ୍ଡାକୁ ଉଠିଆସିବା ଏକ ସୁଶ୍ରୀ ଯୁବତୀ ପକ୍ଷେ ହୁଏତ ସାଧାରଣ କଥା ହୋଇପାରେ, କିନ୍ତୁ ଉଠିଆସି ଜଣକ ବିଷୟରେ ଖୋଜ୍ କରିବା ଅର୍ଥର ଅନର୍ଥ ମଧ୍ୟ ହୋଇପାରେ ।

ଏଣୁ ସେ ବର୍ଷାଶେଷକୁ ଅପେକ୍ଷା କରିବା ବାହାନାରେ ପିଅନ ଶ୍ରେଣୀର ଲୋକଟିଏକୁ ଦେଖି ପଚାରିଲା—

“ଏଇଟା କି ଅଫିସ ?”

ତ ମୁହଁକୁ ଚାହିଁ ପିଅନଟି ଆଶ୍ଚର୍ଯ୍ୟ ହେଲା ନିଶ୍ଚୟ; କାରଣ ସରକାରୀ ଅଫିସ, ବିଶେଷତଃ ଜଣେ ଏକ୍‌ଜିକ୍ୟୁଟିଭ ଇଂଜିନିୟରଙ୍କ ଅଫିସରେ ସୁନ୍ଦରୀ ଯୁବତୀର କାମ ନଥିବା କଥା । ସେ ଧୀରେ ଉତ୍ତର ଦେଲା—

'ମେଜର ବିଲ୍ଡିଂ ଏକ୍‌ଜିକ୍ୟୁଟିଭ ଇଂଜିନିୟରଙ୍କ ଅଫିସ ।'

ଦ୍ୱାଭିତରେ ଆଉଜଣେ ଭଦ୍ରଲୋକ ଆଗେଇ ଆସି ପଚାରିଲେ, 'ଆପଣ କାହାକୁ ଖୋଜୁଛନ୍ତି କି ?'

'ନାଁ, ବର୍ଷାଟା ପାଇଁ ମୁଁ ଅପେକ୍ଷା କରୁଛି ।'

ସେ ଜାଣିପାରିଲା ଭଦ୍ରଲୋକ ତାକୁ ରିକ୍‌ସାରୁ ଓହ୍ଲାଇବା ଦେଖିଛନ୍ତି । ଏଣୁ ଯୋଡ଼ିଦେଲା—

"ରିକ୍‌ସା ବର୍ଷାରେ ନୂଆପଲ୍ଲୀ ଯିବାକୁ ରାଜି ହେଲାନି ।"

ଭଦ୍ରଲୋକ ସାହାଯ୍ୟ କରିବାକୁ ଆତୁର ବ୍ୟଗ୍ରହୋଇ କହିଲେ— "ନୂଆପଲ୍ଲୀ ଯିବେ ? ଦେଖେ ଯଦି ସୁପ୍ରକାଶବାବୁ ଏସ୍. ଡି. ଓ. ଥିବେ ।"

ତାଙ୍କ କଥାରେ ଖିଅଦେଇ ବର୍ତ୍ତମାନ ସ୍ମିତା କହିଲା—

"ସୁପ୍ରକାଶବାବୁ ଇଂଜିନିୟରଙ୍କ ଅଫିସ କଣ ଏଇଠି ? ସେ ଅଛନ୍ତି ?"

"ଓଃ ଆପଣ ତାହାହେଲେ ତାଙ୍କୁ ଜାଣନ୍ତି ? ଭଲ ହେଲା । ଆସନ୍ତୁ ମୁଁ ତାଙ୍କ ରୁମ୍‌ରେ ପହଞ୍ଚାଇ ଦେବି ।"

ସ୍ମିତା ତାଙ୍କ ପଛଧରି ଏକତାଲା ଉପରକୁ ଉଠିଗଲା ।

ସହିଦନଗରର ଭଡ଼ାଘର । ସରକାରଙ୍କ କ୍ୱାର୍ଟରରେ ରହି ବଡ଼ ବଡ଼ ଅଫିସର ସରକାରଙ୍କ ଠାରୁ ଟଙ୍କା ନେଇ ଘରକର ସରକାରଙ୍କୁ ଭଡ଼ା ଲଗାଇ ବେଶ୍ ନିଜେ ମଜ୍ଜା କରୁଛନ୍ତି । ସ୍ମିତା ମନେ ମନେ କ୍ଷୁବ୍ଧ ହେଲା । ସେଦିନ ସେମିନାର ପରେ ବସି ଏଇ କଥାହିଁ ସମସ୍ତେ ଆଲୋଚନା କରୁଥିଲେ । କେଉଁ ଏକ ମନ୍ତ୍ରୀଙ୍କ ଖିଆଲ ଚନ୍ଦ୍ରାଧାରରୁ

ଓଡ଼ିଆ ଭାଷା ଓ ସାହିତ୍ୟର ଅଗ୍ରଗତିର ଗବେଷଣା ଉଦ୍ଦେଶ୍ୟରେ ଗଠିତ ଅନୁଷ୍ଠାନର ଦାରିଦ୍ର୍ୟ ଭିତରେ ଯେଉଁ ସାହିତ୍ୟିକ, ଐତିହାସିକ ଓ ଗବେଷକମାନେ ବ୍ୟସ୍ତ, ସେମାନେ ସରକାରୀ କର୍ମଗୃସ୍ଥ ମଧ୍ୟରେ ଗଣା ହୁଅନ୍ତିନ। ତାଙ୍କ ପାଇଁ ଗାଡ଼ି ନାଇଁ କି ଘର ନାହିଁ। ଆଉ ସରକାରଙ୍କ ତହବିଲ୍‌ରୁ ଉଧାର ନେଇ ଘରକରି ପାରିବାର ଶକ୍ତି ମଧ୍ୟ ନାହିଁ।

ପାହାଚରେ ଉଠୁ ଉଠୁ ବନିତା ଲମ୍ବା ନିଃଶ୍ୱାସଟିଏ ପକାଇଲା। କୈଶୋରରେ ବୁଢ଼ାବାପାଙ୍କ ମୁହଁରେ ଜୀବନର ପ୍ରଥମ କବିତା ଜଗନ୍ନାଥ ଦାସଙ୍କ 'ଭାଗବତ' ତାକୁ ମୁଗ୍ଧ କରିଥିଲା, ଆଉ ସେ ନିଜକୁ ଝାସ ଦେଇଥିଲା ଓଡ଼ିଆ ସାହିତ୍ୟ-ସାଗର ମଧ୍ୟରେ। ସେ କବିଙ୍କ ଚକ୍ଷୁରେ ଦେଖିଥିଲା ସ୍ୱପ୍ନ। ଜୀବନ ତା ପାଇଁ କବିତାମୟ ହୋଇଉଠିଥିଲା। ଆଉ ସେଇ ଛନ୍ଦମୟ ଜୀବନରେ ସେ ଓଡ଼ିଆରେ ଶାନ୍ତିନିକେତନରୁ ପଢ଼ା ଶେଷ କରି ଡକ୍ଟରେଟ୍ କରିବା ପରେ ଏଇ ଅନୁଷ୍ଠାନରେ ନିଜକୁ ମଗ୍ନ କରି-ଦେଇଥିଲା। ଶାନ୍ତିନିକେତନର ସ୍ୱପ୍ନିଳ ପରିବେଶ ତା ମନକୁ ଆର୍ଦ୍ର କରିଥିଲେ ହେଁ ସେ ଖୋଜିପାଇ ନଥିଲା ତା ଜୀବନର ପରିପୂରକ।

ସୁପ୍ରକାଶର ରୁମ୍‌ସାମ୍ନାରେ ପହଞ୍ଚି ଭଦ୍ରଲୋକ ଟିକେ ଅପେକ୍ଷା କଲେ। ଭିତରକୁ ନଯାଇ ଏପଟେ ସେପଟେ ଚାହିଁ ଟିକିଏ ଦୂରରେ ଜଣେ ପିଅନକୁ ପ୍ରଶ୍ନ କଲେ—

"ସାହେବ ଅଛନ୍ତି ?"

"ନାଁ, ବଡ଼ସାହେବଙ୍କ ପାଖରେ ଅଛନ୍ତି।" ଭଦ୍ରଲୋକ ଟିକିଏ ରହି କହିଲେ ବନିତାକୁ—"ଆପଣ ତାହାଲେ ତାଙ୍କ ରୁମ୍‌ରେ ଅପେକ୍ଷା କରନ୍ତୁ। ମୁଁ ଖବର ଦେବାର ବ୍ୟବସ୍ଥା କରୁଛି।" ଏହା କହି ସେ ପରଦା ଟେକି ତାକୁ ଏକ ଚେୟାର ଟାଣି ବସାଇଦେଇ ବାହାରକୁ ଗଲେ। ବନିତା ଘୁରିଆଡ଼କୁ

ବୁଝିଲା । ସରକାରୀ ଅଫିସ ଯେପରି ହେବାକଥା, ବଡ଼ ଟେବୁଲ, ଗଦିପକା ଘୂରୁଥିବା ଚେୟାର, ପଛରେ ଫାଇଲ୍ ରେକ୍, ସାମ୍ନାରେ ଛ'ଟା ଚେୟାର । ବିମଳା ସେକ୍ରେଟାରିଏଟ୍‌ରେ ଏଜୁକେସନ, କଲଚରାଲ ଏଫେୟାର୍ସ ଇତ୍ୟାଦି ବିଭିନ୍ନ ଡାଇରେକ୍ଟୋରେଟ୍‌କୁ ଧାଇଁଛି ତାଙ୍କ ମୁଖ୍ୟ ଗବେଷକଙ୍କ ସହ । ବହୁ ଅଫିସ ଦେଖିଛି, କିନ୍ତୁ ତାର ମନେହେଲା ଏଇ ରୁମ୍‌ରେ କିଛି ତାରତମ୍ୟ ଅଛି ।

କାନ୍ଥରେ ଗୋଟେ ବଡ଼ ଫ୍ରେମରେ ପେନ୍‌ସିଲ୍ ଆଉ ରଙ୍ଗ ତୂଳୀରେ ଅଙ୍କା ଏକ ବିରାଟ ଅଟ୍ଟାଳିକାର ଚିତ୍ର । ତା ତଳକୁ ଗ୍ରାଫ୍ କାଗଜ ଉପରେ ବିଭିନ୍ନ ଲମ୍ବର ରଙ୍ଗୀନ ମୋଟା ମୋଟା ଗାର ସବୁ ଏଠି ସେଠି କିଛି ତାରିଖ ଓ ଟଙ୍କାର ପରିମାଣରେ ଭର୍ତ୍ତି । ଆଉ ଟେବୁଲ୍ ଉପରଟା ଫାଙ୍କା, କିଛି ନାହିଁ । ଇଆଡ଼େ ଫାଇଲ-ରେକରେ ବି ଫାଇଲ ନାହିଁ କି ଟେବୁଲ ଉପରେ କିଛି ନାହିଁ । ମନେ ମନେ ସେ ଭାବିଲା; କଣ ଏଇ ଟେବୁଲ୍ ଚେୟାର ପାଇଁ ଏମିତି ଗୋଟେ ଘର ଭଡ଼ା ନିଆ ହୋଇଛି ନା କଣ ? ସରକାରୀ ପଲିସି ନେଇ ବିଶେଷ ଚିନ୍ତା କରିବା ପୂର୍ବରୁ ସୁପ୍ରକାଶ ହଠାତ୍ ବ୍ୟସ୍ତ ହୋଇ ପଶି ଆସିଲା ହାତରେ ଦୁଇଟା ଶେଲ୍ କାଗଜ ଧରି ।

ପ୍ରଥମେ ସେ ଆଶ୍ଚର୍ଯ୍ୟ ହୋଇ ଉଠିଲା । ବୁଲିଆସି ବିମଳା ସାମ୍ନାରେ ପହଞ୍ଚି, ନିଜ ଆଖିକୁ ବିଶ୍ୱାସ କରିପାରିଲାନି ସେ । ଡ୍ରଇଂ ଦୁଇଟା ଟେବୁଲ ଉପରେ ରଖୁ ରଖୁ ତା ମୁହଁରୁ ବାହାରି ଆସିଲା ସାମାନ୍ୟ ଉତ୍ତେଜନା ସହ—

“ଆରେ ଆପଣ—ଏଠି ?”

କଥାରେ ତାର ପ୍ରଶ୍ନ ଆଉ ବ୍ୟସ୍ତତା ଉଭୟ । ବିମଳାର ଅନୁଷ୍ଠାନ କିଛିଦିନ ୟୁନିଭର୍ସିଟିର ଏକ ପରିତ୍ୟକ୍ତ ଘରେ ଚାଲିବାପରେ ହଠାତ୍ ନୂଆ ଶିକ୍ଷାମନ୍ତ୍ରୀଙ୍କ ଦୟାରୁ ନିଜସ୍ୱ ଘରେ ହେବାକୁ ଯାଉଛି ।

ସେଇ ଦରର ତଥାର ଦାୟିତ୍ୱ ନେଇ ସୁପ୍ରକାଶଙ୍କୁ କେତେଥର ଯିବାକୁ ହେଉଥିଲା ଏଇ ଅନୁଷ୍ଠାନକୁ ଏବଂ ସେଠାରେ ସାହିତ୍ୟ ଅନୁରାଗୀମାନଙ୍କ ସହ ପ୍ରଥମ ପରିଚୟରେ ସେ ବିଚଳିତ ହୋଇପଡ଼ୁଥିଲା । ଏକପ୍ରକାର ଅନୁକମ୍ପା ଜନିତ ସ୍ନେହ ସେ ପ୍ରକାଶ କରି ଆସିଥିଲା ଏଇ ଜାତିଟା ପ୍ରତି । ସେଇ ସ୍ନେହ ତାକୁ ଟାଣିନେଇଥିଲା ଅନୁଷ୍ଠାନର ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ । ସେଇ ସୂତ୍ରରେ ତାର ପରିଚୟ ବନୀତା ଓ ତା' ବନ୍ଧୁବାନ୍ଧବୀ ଗବେଷକମାନଙ୍କ ସହ ।

ବନୀତା ହଠାତ୍ ସୁପ୍ରକାଶ ସମ୍ମୁଖରେ କପରି ଦୋଷୀ ଅନୁଭବ କଲା । ଲଜ୍ଜା ଠିକ୍ ନୁହେଁ ଏକ ବ୍ରୀଡ଼ାଭାବ ତା ବାକ୍‌ଶକ୍ତିକୁ ରୁଦ୍ଧ କରିଦେଲା । ଜୀବନର ଅଠାଇଶ୍‌ଟି ବସନ୍ତର ରୂପ-ରସ-ଗନ୍ଧଭରା ଜୀବନଯୌବନ ତାର ବହୁ ବନ୍ଧୁଙ୍କ ଆକାଙ୍‌କ୍ଷାକୁ ଧୂଳିସାତ୍ କରି ଦେଇଛି । ସେ ଯେ ଏଇ ଅନୁଷ୍ଠାନର ସୁରେନ୍ଦ୍ରବାବୁ ଓ ରମାକାନ୍ତବାବୁଙ୍କ ଠାରେ ଭବିଷ୍ୟତରେ ଏକପ୍ରକାର ଆଶ୍ରୟ ସନ୍ଧାନ କରିବାକୁ ଅନ୍ତରତମ ପ୍ରଦେଶରେ ଚେଷ୍ଟା ନକରିଛି ତା ନୁହେଁ, ହେଲେ—

ହଠାତ୍ ସେଦିନ ମୁଖ୍ୟ ଗବେଷକଙ୍କ ରୁମ୍ ଭିତରକୁ ପଶିଆସିଲା-ବେଳକୁ ସଦ୍ୟ ଖିଅରୁ ଫେରିଥିବା ମୁହଁ ଓ ମୁଣ୍ଡରେ ସିମେଣ୍ଟ ଆଉ ବାଲିର ଆସ୍ତରଣ ଭିତରୁ ସେ ଏକ ବିଶେଷ ପୁରୁଷଭିର ଉପସ୍ଥିତି ଅନୁଭବ କରିଥିଲା । ସୁପ୍ରକାଶ ଟେବୁଲ ଉପରେ ବସି କେତେଗୁଡ଼ାଏ ବ୍ଲୁପ୍ରିଣ୍ଟ ଧରି ଗମ୍ଭୀର ମନୋନିବେଶ ସହକାରେ କଣସବୁ ହିସାବ କରୁଥିଲା ଗୋଟେ ସ୍ଲାଇଡ୍‌ରୁଲ୍ ଧରି, ଆଉ ପେନ୍‌ସିଲଟା ନେଇ କାଗଜ ଉପରେ ନୋଟ୍ କରି ଚାଲିଥିଲା ।

ବନୀତା ପଶିଆସି ସାର୍‌ଙ୍କୁ ନମସ୍କାର କରି କଣ କହିବାକୁ ଯାଉଁ ଯାଉଁ ଚୁପ୍ ହୋଇଗଲା । କାରଣ ସାର୍ ମଧ୍ୟ ଉଦ୍‌ବିଗ୍ନ ହୋଇ ଲେକଚରର ମୁହଁକୁ ଚାହିଁ ରହିଥିଲେ । କିଛି ସମୟ ପରେ ସୁପ୍ରକାଶ ମୁହଁ ଉଠାଇ କହିଲେ—

"ନାଁ ଏଠି ଏ କଲମଟା ବର୍ତ୍ତମାନ ଆଉ ବନ୍ଦ କରିଦେବନି ।" ମୁହଁ ବୁଲାଇ ବାମାଚାକୁ ଦେଖି ହଠାତ୍ ନିଉନ ହୋଇଲା । ସାର୍ ବାମାଚା ଆଡ଼କୁ ଚାହିଁ ପଚାରିଲେ 'କଣ କହୁଥିଲ କି' ? ଉତ୍ତରକୁ ଅପେକ୍ଷା ନକରି ପରିଚୟ କରାଇ ଦେଲେ ସେ । ବାମାଚା ହଠାତ୍ ହୃଦୟରେ ଏକ ଆଘାତ ଅନୁଭବ କଲା । ସୁପ୍ରକାଶ ଶୁଖିଲା ନମସ୍କାରଟିଏ କରି ପୁଣି ଡା ଡ୍ରଇଂ ଆଡ଼କୁ ନଜର କରି କହିଲା "ଦେଖନ୍ତୁ, ଆପଣ ଆଉ ସେ କଥା ଉଠାନ୍ତୁ ନାହିଁ । କଲମ୍‌ଟା ରହିଲେ ଲାଇବ୍ରେରୀ ଭିତରେ ବା କ୍ଷତି କଣ ? ଏଇଟା ତ ଆଉ ମିଟିଂ ହଲ୍ ନୁହେଁ ।" ସାର୍ ତା ସହ ସେ ବିଷୟରେ ଅନ୍ୟ ଚର୍ଚ୍ଚା କରିବାକୁ ଆରମ୍ଭ କଲେ ।

ବାମାଚା "ପରେ ଆସିବି" କହି ଉଠିଗଲା । ତାପରେ ଯିବା ଆସିବା ରାସ୍ତାରେ ତାର ଆଖି ଖୋଜି ବୁଲିଚି ସେଇ ମଣିଷଟାକୁ, ଯିଏକି ବିଶ୍ୱପ୍ରଥର ମୁହଁ ଟେକି ତା ପାଖକୁ ଚାହିଁବା ଦରକାର ମନେକରିନି । ବିଶେଷ ସୁନ୍ଦରୀ ହିସାବରେ ଖାଲି ଯେ ତାର ନାମ ଥିଲା ତା ନୁହେଁ, ତାର ମିଷ୍ଟଭାଷା ଓ ବ୍ୟବହାର ସମସ୍ତଙ୍କୁ ଆକୃଷ୍ଟ କରେ ।

ହଠାତ୍ ସେଦିନ ରମାକାନ୍ତବାବୁଙ୍କୁ ନେଇ ସେ ଇନ୍‌ଷ୍ଟିଚ୍ୟୁଟ ଘର ଦେଖିବାକୁ ବୁଲି ବାହାରି ପୁଣି ଆଉଥରେ ଦେଖେ ସୁପ୍ରକାଶକୁ । କଂକ୍ରିଟ୍ ଫ୍ରେମ୍‌ର ତୃତୀୟ ମହଲା ଉପରେ ଖାକିପୋଷାକ ଆଉ ହେଲ୍‌ମେଟ୍ ପିନ୍ଧି କାର୍ଯ୍ୟବ୍ୟସ୍ତ ଥିଲା ସୁପ୍ରକାଶ । ସେଇ ତିରିଶ୍ ଫୁଟ୍ ଉପରୁ ସେ ତା ବଳିଷ୍ଠ ଶରୀରର ମାଂସପେଶୀ ଗୁଡ଼ାକ ଦେଖିପାରୁଥିଲା ଯେପରି । ଉପରୁ ସେ ତାଙ୍କୁ ଦେଖି ଥିଲାକି ନା କେଜାଣି, ଓହ୍ଲାଇ ଆସିନଥିଲା ସେ । ଏଥର ସେ ନିଜକୁ ଯଥେଷ୍ଟ ଅପମାନିତ ମନେକଲା । ରମାକାନ୍ତ କଣ ସବୁ କହି ଯାଉଥିଲେ, ରୁଦ୍ଧ କ୍ରୋଧ ନେଇ ସେ ଶୁଣିପାରୁ ନଥିଲେ ।

ତା' ପରେ ତାଙ୍କ ଇନ୍‌ଷ୍ଟିଚ୍ୟୁଟ୍ କାମରେ ବାରମ୍ବାର ସୁପ୍ରକାଶ ସହ ଦେଖା ହେବା ଭିତରେ ଧୀରେ ଧୀରେ ତାର ବ୍ୟବହାରର ସାମାନ୍ୟ ରୁକ୍ଷତା ସତ୍ତ୍ୱ ସେ ତା ପୁରୁଷତ୍ୱରେ ନିଜକୁ ହରାଇ ବସିଥିଲା । ସୁପ୍ରକାଶର ସ୍ୱାଭାବିକ ଉଦ୍‌ବେଳିତ ବ୍ୟବହାର ତାକୁ ଆହୁରି ମୁଗ୍‌ଧ କରିଥିଲା । ସେ ଚେଷ୍ଟା କରିନାହିଁ ବନୀତାର ଦୃଷ୍ଟି ଆକର୍ଷଣ କରିବାକୁ । ତାର ଅନ୍ତରଙ୍ଗତାକୁ ଆବୋରି ବସିବା ପାଇଁ ମଧ୍ୟ ସେ ବ୍ୟଗ୍ର ନଥିଲା; ଯେଉଁଟା ଜୀବନର ନାରୀତ୍ୱ ଅନୁଭବ କରିବା ଦିନଠୁ ସେ ଦେଖି ଆସିଥିଲା ବୟସ ନିର୍ବି-ଶେଷର ପ୍ରାୟ ସବୁ ପୁରୁଷଙ୍କଠାରେ । ଆଜିର ଏଇ ପୁରୁଷଠାରେ ଏଇ ଧକ୍‌କା ତା ପ୍ରତି ବରଂ ବିଶେଷ ଆକର୍ଷଣର କାରଣ ହୋଇ ଛିଡ଼ା ହୋଇଥିଲା ।

ବାରମ୍ବାର ଚେଷ୍ଟାକରି ବିଭିନ୍ନ କାର୍ଯ୍ୟକ୍ରମରେ ସୁପ୍ରକାଶର ଉପସ୍ଥିତିର ବ୍ୟବସ୍ଥା କରି ଧୀରେ ଧୀରେ ସେ ପରିଚୟକୁ ଗାଢ଼ କରି ପାରିଥିଲା, ଆଉ ଅନ୍ତର ମଧ୍ୟରେ ଫୁଟିଆସିଥିବା କଳିକାଟିକୁ ସେ ନିଜର ଏକାନ୍ତରେ ଅନୁଭବ କରି ବ୍ୟଥିତ ହେବାଛଡ଼ା ତାର ଅନ୍ୟ ଉପାୟ ନଥିଲା, କାରଣ ସୁପ୍ରକାଶ ବନ୍ଧୁତ୍ୱର ସୀମା ଡେଇଁ କେତେଦୂର ତା' ପ୍ରତି ଆକୃଷ୍ଟ ସେ ତାହା ସ୍ଥିର କରି ପାରୁ ନଥିଲା ।

ନା, ସେ ହାରିଯିବ ନାହିଁ । ଏଇ ପ୍ରତିଜ୍ଞାରେ ସେ ଆଜି ସିଧା ଚାଲିଆସିଛି ଏଠାକୁ । ଏଣୁ ଏ ପ୍ରଶ୍ନରେ ସେ ବିବ୍ରତ ନହୋଇ କଥାକୁ ସରଳ କରିବାକୁ ଯାଇ କହିଲା—

"ବର୍ଷା ଆସିବାରୁ ଅଫିସ୍ ବାରଣ୍ଡାକୁ ଉଠି ଆସି ଦେଖେ ସ୍ଥାଭିତରେ ଆପଣଙ୍କ ଅଫିସ୍, ଏଣୁ ପଶି ଆସିଲି ।"

ସୁପ୍ରକାଶର ଚିନ୍ତାଧାରାରେ ଭଙ୍ଗା ପଡ଼ିଲା । ବନୀତା ପୁଣି କହିଲା ସାମାନ୍ୟ ହସି—

'ବିନା ପାରମିସନରେ ପଶି ଆସିଛି, ଆପଣଙ୍କ ଅନୁପସ୍ଥିତିରେ'—

କଥାରେ ବାଧାଦେଇ ସୁପ୍ରକାଶ କହିଲା—

"ଆରେ, ଡୋଣ୍ଟ ଓରି । ବି କମ୍‌ଫର୍ଟେବୁଲ୍ । ଆପଣ ଓଦା ହୋଇ ନ ଯାନ୍ତି ତ ?"

"ନାଁ ବର୍ଷା ପୂର୍ବରୁ ଆସି ଯାଇଚି ।"

ମୁହୂର୍ତ୍ତିଟିଏ ରହି ପୁଣି କହିଲା "ସିଆଡ଼େ ଆପଣଙ୍କ ଯିବାର ନାହିଁ ? ଟିକେ ଡ୍ରପ୍ କରି ଦେଇଥାନ୍ତେ—"

"ହିଁ ହିଁ ନିଶ୍ଚୟ । ଯିବାର ପ୍ରୋଗ୍ରାମ ନଥିଲେବି—ଚାଲନ୍ତୁ ଆପଣଙ୍କୁ ଛାଡ଼ିଦେଇ ମୁଁ ଅନ୍ୟଆଡ଼େ ଯିବି—ମୋର କାମ ବି ଅଛି ।"

ଡ୍ରାଇଭରକୁ ଡ଼ାକି ଗାଡ଼ି ବାହାର କରିବାକୁ କହି ସେ ଡ୍ରୟର ଖୋଲି ଡ୍ରଇଂ ରଖିଦେଇ ବାହାରିଲା ।

ଜିପ୍‌ରେ—ପୁଣି ଡ଼େଜେଲ ଜିପ୍‌ରେ ବସିବାକୁ ଯେତିକି ଜାଗା । ଦେହକୁ ଦେହ ପ୍ରାୟ ଲଗାଲଗି ହୋଇ ବସିବାବେଳକୁ ଅଧା ଓଦା ହୋଇଥିଲେବି ନମିତା ହଠାତ୍ ଅନୁଭବ କଲା ଏକ ନୂତନ ଉଷ୍ମତା । ଶାନ୍ତିନିକେତନର ବନ୍ଧୁଙ୍କ ସହ ବହୁ ରୋମାଣ୍ଟିକ ସନ୍ଧ୍ୟା ରାତିର ଗଭୀରତା ପର୍ଯ୍ୟନ୍ତ ଲମ୍ବିଯାଇଛି, କିନ୍ତୁ କୌଣସି ପୁରୁଷର ସ୍ପର୍ଶ ତାକୁ ଏଇ ଉଷ୍ମତା ଦେଇ ପାରି ନଥିଲା । ରାସ୍ତାର ଉଠ୍‌ପଡ଼ ସହ ସେ ଯେପରି ଅନୁଭବ କରୁଥିଲା ଏଇ ବାଲିପଥରର ପୁରୁଷଟାହିଁ ତା ଜୀବନର ଏତେଗୁଡ଼ାଏ ବର୍ଷର ଅପ୍ରସ୍ଫୁଟିତ କଳିକା ସମୂହର ସୂର୍ଯ୍ୟ—ଯାହାର ଉଦୟ ତା ଜୀବନକୁ କରିବ ପୁଷ୍ପଭରା ।

ନାରୀ, ଏମିତିକି ଅତି କମ୍ ବୟସରୁ ବୋଧହୁଏ ବେଶ୍ ମାୟାବିନୀ । ପୁରୁଷର ସ୍ପର୍ଶ ତ ଦୂରର କଥା, ଆଖିରୁ ଅନୁମାନ କରିନେବେ ଅନ୍ତରର ଭାଷା । ଏଇ କେତେଗୁଡ଼ାଏ ଦିନର ଖାପଛଡ଼ା ଭାବ ପରେ ସୁପ୍ରକାଶ ଆଜି ଜିପ୍‌ରେ ବସି କିଛି ବାଟ ନଯାଉଣୁ ଯେ ହଠାତ୍ ଦୁର୍ବଳ ହୋଇ ଉଠିଚି, ସ୍ପର୍ଶରେ ଅନୁଭବରୁ ନମିତା ଠିକ୍ ବୁଝି ନେଇଥିଲା । ସୁପ୍ରକାଶର କାନ ନାଲି ହୋଇ ଉଠିଚି । କଥା ହଠାତ୍ ବନ୍ଦ ହୋଇଯାଇଛି ।

ବନୀତା କହିଲା—"ଆଜି ଆମ ଅନୁଷ୍ଠାନ ତରଫରୁ ଆମେ ଆମ ସହକର୍ମୀ ରଜନୀବାବୁ ଓ ତାଙ୍କ ନବବିବାହିତା ସ୍ତ୍ରୀଙ୍କୁ ହୋଟେଲ ଅଶୋକାରେ ଏକ ରିସେପ୍‌ସନ୍ ଦେଉଚୁ । ଆପଣ ଅଜି ଆସନ୍ତୁ ମୋର ଗେଷ୍ଟ ଭାବରେ ।" ବର୍ତ୍ତମାନ ସୁପ୍ରକାଶର ହଁ ବା ନାଁ ଉପରେ ଏକ ବିରାଟ ପ୍ରଶ୍ନବାଚୀ ତା ଜୀବନରେ । ସୁପ୍ରକାଶ ସାମାନ୍ୟ ଅପ୍ରସ୍ତୁତ ହୋଇ କିଛି କହିବା-ପୂର୍ବରୁ ବନୀତା କହିଉଠିଲା "ରହିଲା ତାହାହେଲେ, ଆପଣ ମୋତେ ଠିକ୍ ସାଢେ ସାତ୍‌ରେ ପିକ୍‌ଅପ୍ କରିବେ ।" ସୁପ୍ରକାଶକୁ ଆଉ କିଛି କହିବାକୁ ନଦେଇ ସେ ହଷ୍ଟେଲ ପାଟରେ ଓହ୍ଲାଇଗଲା । ଅନ୍ତରଭରା ଆନନ୍ଦରେ ସେ ସନ୍ଧ୍ୟାସାରା ଘୁରିବୁଲୁଥିଲା ତାଙ୍କ ହଷ୍ଟେଲ ଘରପାଖ ଖୋଲା ପଡ଼ିଆରେ । ଠିକ୍ ସାଢ଼େସାତରେ ବାରନ୍ଦାରେ ସୁଟ୍ ଟାଇ ପିନ୍ଧା ସୁପ୍ରକାଶକୁ ହଠାତ୍ ଦୂରରୁ ସେ ଚିହ୍ନି ପାରିଲାନି । ତାଙ୍କ ଇନ୍‌ଷ୍ଟିଚ୍ୟୁଟର ଏଡ଼ମିନିଷ୍ଟ୍ରେଟିଭ୍ ଅଫିସର ବିନୟବାବୁଙ୍କ ପରି ଠକ୍ ଠକ୍ କରି ଚାଲି ଆସୁଥିଲା ସେ ।

ସୁପ୍ରକାଶ ଟିକଏ ଦୂରରୁ ସାମାନ୍ୟ ବ୍ୟସ୍ତତାର ସହ ଆସି ତାକୁ ଆନ୍ତରିକତାର ସହ ନମସ୍କାର ଜଣାଇଲା । ଦୁହେଁ ଗେଟ୍ ପାଖକୁ ଆଗେଇ ଯାଉ ଯାଉ ବନୀତା ଅନୁଭବ କଲା ସୁପ୍ରକାଶ କେମିତି ଲଗି ଲଗି ଚାଲୁଚନ୍ତି ।

ହୋଟେଲ ଅଶୋକାର ଏକ ସ୍ପେଶାଲ ହଲ୍‌ରେ ସାଜସଜ୍ଜା ହୋଇଥିଲା । ଏମାନେ ପହଞ୍ଚିବାବେଳକୁ ରମାକାନ୍ତ, ସୁରେନ୍ଦ୍ର, ଆଉ ଅନ୍ୟ ସହକର୍ମୀ ସବୁ ଠିକ୍ ପହଞ୍ଚିଥିଲେ । ରମାକାନ୍ତ ନିଜ ଟାଇଟା ସଜାଡ଼ୁ ସଜାଡ଼ୁ ଧାଇଁ ଆସିଥିଲେ ବନୀତା ପାଖକୁ । ବନୀତା ସାମାନ୍ୟ ହସି ସୁପ୍ରକାଶ ଆଡକୁ ଚାହିଁଲା । ସୁପ୍ରକାଶ ଆଗେଇଯାଇ ସୁରେନ୍ଦ୍ର ଆଉ ଅନ୍ୟାନ୍ୟ ସହକର୍ମୀ ଏବଂ ସହକର୍ମିଣୀଙ୍କ ସହ ନମସ୍କାର ଆଦାନପ୍ରଦାନ ସହ ଭଦ୍ରୋଚିତ କଥୋପକଥନରେ ବ୍ୟସ୍ତ ରହିଲା ।

ରମାକାନ୍ତ ସହ ସେ ସୁପ୍ରକାଶକୁ ନେଇ ନବଦମ୍ପତିଙ୍କ ନିକଟକୁ ଆଗେଇଗଲା ।  ସେଠି ଗତାନୁଗତିକ ଶୁଭକାମନା ସହ ନାଲିକାଗଜରେ ବାନ୍ଧି ଗିଫ୍ଟ ଏକ ପ୍ରେଜେନ୍‌ଟେସନ୍ ବାହାର କଲେ ସୁପ୍ରକାଶ, ରମାକାନ୍ତ, ସୁରେନ୍ଦ୍ର ଆଉ ଅନ୍ୟାନ୍ୟ ସହକର୍ମୀ ମଧ୍ୟ ।

ସନ୍ଧ୍ୟା ଧୀରେ ଧୀରେ ରାତିରେ ପରିଣତ ହୋଇ ଗଭୀର ହେବାବେଳକୁ ଖିଆପିଆ ସହ ସମସ୍ତ ଗତାନୁଗତିକ ପ୍ରଥା ସରିଆସିଥିଲା । ସବୁରି ଭିତରେ ସେ ଖୋଜିବୁଲିଲା କାହିଁ ସୁପ୍ରକାଶ ! ସେଇ ପରସ୍ପରର କଥା ବା ପୋଷାକକୁ ପ୍ରଶଂସା କରିବା । ଅନ୍ୟର କଥାରୁ କିଛି ବୁଝିବାକୁ ଚେଷ୍ଟା-ନକରି ଅନ୍ୟମାନଙ୍କ ସହ ମିଶି ସାମାନ୍ୟ ମିଛ ହସ ଇତ୍ୟାଦି ଇତ୍ୟାଦି, ଯେଉଁଟା ଆଧୁନିକ ସମାଜରେ ଏକ ମୁଖୋସ୍ ସେଇ, ମୁଖା ଭିତରେ ସେ ସୁରେନ୍ଦ୍ର, ରମାକାନ୍ତଙ୍କ ସହ ଆଜି ସୁପ୍ରକାଶକୁ ମଧ୍ୟ ଦେଖିଲା ।

ସୁପ୍ରକାଶ ସହ ଗୋଟିଏ ଟ୍ୟାକ୍ସିରେ ଫେରୁ ଫେରୁ ସାନ୍ନିଧ୍ୟରେ ଗଭୀରତା ସତ୍ତ୍ୱେ ସେ ଅନୁଭବ କରୁଥିଲା ଉତ୍ତାଳ ତରଙ୍ଗର ଭଟ୍ଟା ।



# ଅର୍ଦ୍ଧସତ୍ୟ

ବୈଶାଳୀ ଗୋଟେ ଝୁଙ୍କରେ ଗାଁରୁ ଚାଲିଆସି ବସ୍‌ର ଭିଡ଼ ଭିତରେ କୌଣସି ମତେ ଷ୍ଟେସନ୍‌ରେ ପହଞ୍ଚି ଟିକେଟ୍ ଖଣ୍ଡେ ନେଇ ଯେତେବେଳେ ପ୍ଲାଟ୍‌ଫର୍ମରେ ପହଞ୍ଚି ଜାଣିବାକୁ ପାଇଲା ଯେ ଟ୍ରେନ ଘଣ୍ଟାଏ ଡେରି, ୱେଟିଂ ରୁମ୍‌କୁ ଯାଇ ଲମ୍ବା ଚେୟାରରେ ବସି ଉପରକୁ ଚାହିଁଲା । ପଙ୍ଖାର କୁଁ କୁଁ ଶବ୍ଦ ସହ ଧୀର ମନ୍ଥର ଗତି ତା ମନକୁ ଧୀରେ ଧୀରେ ପଛକୁ ଭିଡ଼ି ନେଇଥିଲା । ମନେ ପଡ଼ିଲା, ଭାଇ ବର୍ତ୍ତମାନ ସୁଦ୍ଧା ଫେରି ନଥିବେ ନୟାଗଡ଼ରୁ—ଆଉ ଭାଉଜ ତ ତାଙ୍କ ବେଡ଼ରୁମ୍‌ରେ ବସି ଟି: ଭି: ଦେଖୁଥିବେ । ହଠାତ୍ ତା ମନରେ ସାମାନ୍ୟ ଦୁର୍ବଳତା ଅନୁଭବ କଲା । ବଡ଼ବା ସାନଭାଇ—ଟ୍ୟୁରରୁ ଫେରୁ ଫେରୁ ଆହୁରି ତିନି ଚାରି ଦିନ । ତାକୁ ହେଲେ ଟିକେ ଦେଖାକରି ଆସିଥାନ୍ତା ସେ !

ନାଁ, ଘରକଥା ଭାବି ଆଉ ଲାଭ ନାହିଁ । ଚାରିଆଡ଼କୁ ଚାହିଁଲା । ସାମ୍ନାରେ ଜଣେ ମୋଟୀ ହୋଇ ମାରୁଆଡ଼ି ମହିଳା—ବେଶ୍ ସ୍ମାର୍ଟ୍ । ଖବର କାଗଜଟାକୁ ଟେବୁଲ ଉପରେ ବାଡ଼େଇ ଦେଉ ଦେଉ ତା ଆଡ଼କୁ ଚାହିଁ ଗମ୍ଭୀର କ୍ରୋଧର ସହ ଚିତ୍କାର କଲାପରି କହି ଉଠିଲା—'ଏ ଶାଲ ସର୍ଦ୍ଦାର ସବ୍ କର ରହେହେଁ—ଶାଲା ସବ୍ ବଦମାସ ।'

ବୈଶାଳୀ ଖବରକାଗଜଟା ମୁହଁ ପାଖକୁ ନେଲା । ପଛ ପୃଷ୍ଠାରେ ନାରୀ ନିର୍ଯାତନାର କାହାଣୀ ପଢ଼ୁ ପଢ଼ୁ ଅବସ୍ଥାଚକ୍ରରେ କାହାରି କଣ ଘଟିବାକୁ ଯାଉଚି ଭାବି ବସିଲା—

ଭାଇ ଚାକିରି କରି ବାହାରେ ଥିଲେ । ବେଶ୍ ଠିକ୍ ଚାଲିଥିଲା । ମା'ଙ୍କ ଅନ୍ତେ ମା' ପରି ସେ ରମୁର ଭାର ନେଇଥିଲା, ଆଉ 'ସାନଭାଇ' ବୋଲି ଡାକି ରମୁ ମନରେ ସେ ସୃଷ୍ଟି କରିବାକୁ ଚେଷ୍ଟା କରିଥିଲା ଏକ ଦାୟିତ୍ୱଜ୍ଞାନ ।

ଅକର୍ମଣ୍ୟ ବାପାଙ୍କ ଛଡ଼ା ଘରେ କେହି ନାହିଁ ରମୁ ଘରର ଭାର ନେବ । କିନ୍ତୁ ସବୁ ଓଲଟପାଲଟ ହୋଇଗଲା । ସ୍କୁଲ ଚାକିରି ଖଣ୍ଡିକ ମଧ୍ୟ ଭାଇ ଭାଉଜ ଫେରିଆସି ତା'ର ବନ୍ଦ କରିଦେଲେ । ଭାଇଙ୍କର କଣ ପାଇଁ ସେ ଚାକିରି ଗଲା ଗାଁରେ କେହି ଜାଣିପାରିଲେ ନାହିଁ । ସେ କିନ୍ତୁ ରିଜାଇନ କରି ଆସିଲେ ବୋଲି ଘରେ ବସି ପଲିଟିକ୍ସ କଲେ । ଭାଗ୍ୟକୁ ରମୁକୁ ମୁଣ୍ଡ ଲଗାଇ ଦେଇଥିଲା ବୈଶାଳୀ ଏଇ ସ୍କୁଲ ଚାକିରି ଦରମାରୁ । ରମୁ କୌଣସିମତେ ଘରେ ଖାଇ କଲେଜରୁ ବି. ଏସ୍. ସି. ଟା ଭଲରେ ପାସ୍ କରି ମେଡ଼ିସିନ୍ ରିପ୍ରେଜେଣ୍ଟେଟିଭ୍ ହୋଇ ମାସରେ ୨୦/୨୫ ଦିନ ବାହାରେ କାଟିଲା । ଏଣୁ ଘରେ କଣ ହେଉଚି ଠିକ୍ ଜାଣି-ପାରିଲା ନାହିଁ । ବୈଶାଳୀ ମଧ୍ୟ କାହାରି ପାଖରେ କହିବା ଅବସ୍ଥାରେ ନଥିଲା । ବାପାଙ୍କ ଆଖିପାଣି ପୋଛୁ ପୋଛୁ ତା' ନିଜ କଥା ସେ ଭୁଲି ଯାଇଥିଲା । କିନ୍ତୁ ବାପାଙ୍କ ଅନ୍ତେ ସେ ଆଜି ବାଧ୍ୟ ହୋଇ ବହୁପୂର୍ବରୁ କଲିକତାରେ ବ୍ୟବସ୍ଥା କରିଥିବା ଟ୍ରେନିଂ ଯିବାପାଇଁ ଷ୍ଟେସନରେ ଆସି ପହଞ୍ଚିଥିଲା ।

ଭଦ୍ରମହିଳା ତାର ସାମ୍ନାରେ ଉଠି ଯାଉଁ ଯାଉଁ ଖବରକାଗଜ ଖଣ୍ଡିକ ପକାଇଦେଇ ଆଗେଇଗଲେ । ବଡ଼ ବଡ଼ ଅକ୍ଷରରେ ଛପାହୋଇଛି ପୁନାରେ ଜେନେରାଲ ବୈଦ୍ୟଙ୍କ ହତ୍ୟା ସମ୍ବାଦ । ହଠାତ୍ ତା ମନରେ

ଦାଢ଼ି-ନଖଭରା ମୁହଁ ଓ ପଗଡ଼ି ନେଇ ଠିଆ ହେଲା ଗୋଟିଏ ଦୈତ୍ୟ-ମାନବର ରୂପ । ଶିଖ ସମ୍ପ୍ରଦାୟର କିଛି ଲୋକ ଆଜି ଦାନବର ରୂପ ନେଇ ସବୁରି ଆଗରେ ଠିଆ ।

ଆଖି ବୁଲାଇ ନେଲା ସେ କାଗଜର ଏପଟ ସେପଟ । ଏଠି ନାରୀ ନର୍ଯ୍ୟାତିତ, ସେଠି ନାରୀ ଅବହେଳିତ—ଏମିତି ଖବରରେ ଭର୍ତ୍ତି । ହଠାତ୍ ତାର ଭୟ ହେଲା । ସାରା ଶରୀର ଯାଏ । ଥ୍ରୀ ଟାୟାରରେ ରିଜାରଭେସନ ଥିଲେବି ତାକୁ ସାମାନ୍ୟ ଭୟ ଲାଗିଲା । ଆଖି ବନ୍ଦ କରି ଉପରକୁ ଅନାଇ ସେ ବସି ରହିଲା ।

କେତେବେଳେ ସାମାନ୍ୟ ତନ୍ଦ୍ରାରେ ହଠାତ୍ ଦେଖେତ ସେ ନିଜେ ଛନ୍ଦା ହୋଇଛି ଏକ ବିରାଟ ଦଳରେ । ସେଠି ତା ସୁରକ୍ଷାଖରେ ଥ୍ରୀ ଟାୟାର ବାର୍ଥରେ ଗୁଡ଼ାଏ ଲୋକ ଶୋଇଛନ୍ତି । ଧୀରେ ଧୀରେ ପ୍ରତି ବାର୍ଥର ଲୋକ ଉଠିବାବେଳକୁ ଦେଖେ ସମସ୍ତ ଜଣେ ଜଣେ ଶିଖ । ହାତରେ ତାଙ୍କର ଖଣ୍ଡା ! ଭୟରେ ତା' ଆଖି ବନ୍ଦ ହୋଇ ଯାଉଁ ଯାଉଁ ପାଟି ଖୋଲି ସେ ହଠାତ୍ ଚିତ୍କାର କଲାବେଳକୁ ତନ୍ଦ୍ରା ଭାଙ୍ଗିଗଲା । ଓ୍ୱେଟିଂ ରୁମ୍‌ର ଜଗୁଆଳି ସ୍ତ୍ରୀଲୋକଟି ତାକୁ ଡାକଦେଲା ।

ଉଠି ଗାଧୁଆଘରୁ ଆସୁ ଆସୁ ଟ୍ରେନ୍ ଆସିବା ସମୟ ହୋଇ ଯାଇଥିଲା । ସୁଟ୍‌କେସ୍ ଖଣ୍ଡିକ ନେଇ ସେ ତା' ଡ଼ବାରେ ଉଠିଯାଇ ନିଜ ସିଟ୍ ଖୋଜିନେଲା ।

ଖୋର୍ଦ୍ଧାରୁ ଭୁବନେଶ୍ୱର ବା କେତେ ବାଟ, କିନ୍ତୁ ସାରା ଦିନର ମାନସିକ ତଥା ଶାରୀରିକ ଥକ୍‌କାରେ ସେ ଶୋଇଯାଇଥିଲା । ଭୁବନେଶ୍ୱର ପ୍ଲାଟଫର୍ମରେ ପହଞ୍ଚିବାବେଳକୁ ତାର ନିଦ ଭାଙ୍ଗିଯାଇଥିଲା । ହଠାତ୍ ତା' ସାମ୍ନାରେ ଧଳାପଗଡ଼ି ତଳେ ନଖ ଦାଢ଼ି ଥିବା ଲୋକଟିକୁ ଦେଖି ଚମକି-

ଗଲା ସେ । ଲୋକଟି ତାର ମୁହଁକୁ ଚାହିଁ ରହିଥିଲାନା କଣ—ହଠାତ୍ ମୁହଁ ବୁଲାଇ ନେଲା । ବୈଶାଳୀ ଉଠିଲେ ବାଥ୍‌ରୁମ୍ ବାହାନାରେ ଡବାର ଏମୁଣ୍ଡରୁ ସେମୁଣ୍ଡ ବୁଲିଗଲା । ଆଉ କେଉଁଠି ସ୍ତ୍ରୀଲୋକ ଅଛନ୍ତି ! ହଁ ଏଠି ସେଠି ନଜ ପଡ଼ିଲା । ତାଙ୍କୁ ମିଳିଥିବା ଅଂଶରେ କେହି ନଥିଲେ—ସେଥିରେ ପୁଣି ସିଟ୍‌ରେ ସେହି ଦାନବ ପରି ହିଂସ୍ର ଚେହେରାର ଲୋକଟାଏ ।

ପ୍ଲାଟଫର୍ମକୁ ଓହ୍ଲାଇ ସେ ଦୃ କଦମ ଗଲା ଏବଂ ଖୋଜି ବାହାର କଲା ଟି.ଟି.ଆଇ ସାହେବଙ୍କୁ । ଅସୁବିଧାଟା ଦେଖି ସଙ୍ଗେ ସଙ୍ଗେ ଟି.ଟି.ଆଇ ସାହେବ ଡବା ଭିତରକୁ ଆସି ଅନ୍ୟ ସ୍ତ୍ରୀ ଲୋକ ଥିବା ଅଂଶରେ ତା’ ପାଇଁ ବାର୍ଥଟିଏ ଚେଷ୍ଟାକଲେ, କିନ୍ତୁ କୌଣସି ସୁବିଧା ହୋଇ-ପାରିଲାନି । କହିଲେ ‘ଆପଣ ବସନ୍ତୁ, ମୁଁ ଏଇଠି ନହେଲେ ଆର ବଗିରେ ବ୍ୟବସ୍ଥା କରିଦେବି କଟକରେ ।’ ଅଗତ୍ୟା ବାଧ୍ୟହୋଇ ଆସି ବସିଲା ସେ । ସାମ୍ନାରେ ବିସ୍ତାରିତ ଲୋକଟା । ସାମାନ୍ୟ ଭଦ୍ରଭାବ ନାହିଁ । ଆଖି ଦିଟାରେ ଯେପରି ଖାଇଯିବ ତାକୁ । ଇନ୍ଦିରାଗାନ୍ଧିଙ୍କ ହତ୍ୟାଠାରୁ ଆରମ୍ଭ କରି ଖବରକାଗଜର ପ୍ରତ୍ୟେକ ଦିନ ପଢ଼ୁଥିବା ହତ୍ୟାର ବିଭିଷିକା ତା’ମନରେ ନାଚି ଉଠିଲା । ଭୟ ଆଉ କ୍ରୋଧରେ ତା ଲୋମ ଟାଙ୍କୁରି ଉଠିଲା । ରାତରେ କଣ ସାରାଟା ଏଇ ଜଘନ୍ୟ ଲୋକଟା ସାମ୍ନାରେ ବସି କାଟିବାକୁ ପଡ଼ିବ ! ଶୋଇବା କଥା ଅସମ୍ଭବ ।

କଟକରେ ଯାହାହେଉ ଦିଟା ବଗି ଛାଡ଼ି ଆଉଗୋଟେ ବଗିରେ ସ୍ତ୍ରୀଲୋକଙ୍କ ଭିତରେ ବ୍ୟବସ୍ଥା କରିଦେଲେ ଟି. ଟି. ଆଇ ମହାଶୟ । ଶାନ୍ତିର ନିଃଶ୍ୱାସ ପକାଇ ସୁଟ୍‌କେଶ୍ ଖଣ୍ଡ ଧରି ବୈଶାଳୀ ସେଠାକୁ ପଳାଇଗଲା । ଗୃହଦରଟା ବାହାରକରି ବିଛାଇବାକୁ ଯାଇ ବୋକ ଅନୁଭବ କଲା ସେ । ବ୍ୟବସ୍ଥା କରିସାରି ତଳକୁ ଓହ୍ଲାଇ ସେ କଦଳୀ ଛଅଟା କିଣି ବୁଲିପଡ଼ିବା-ବେଳକୁ ସେଇ ସର୍ଦ୍ଦାର ଆସୁଛି । ଗୋଟେ ସ୍ତ୍ରୀଲୋକମିଶା ଫେମିଲି ଯାଉଥିଲେ । ତାଙ୍କର ଗହଣରେ ଯାଇ ସେ ନିଜ ଡବାରେ ଚଢ଼ିଗଲା ।

ଚନ୍ଦ୍ରାଙ୍କୁ ଆଖିରେ ହଠାତ୍ ସହଯାତ୍ରୀମାନେ ଉଠି ନିଜ ନିଜର ବିଛଣା ବାନ୍ଧିବାକୁ ଆରମ୍ଭ କଲେ । ରାତି ଆହୁରି ବାକି ଅଛି । ତାର ବାନ୍ଧିବାର କିଛି ନାହିଁ । ଗୃହର ଆଉ ପମ୍ପଦଅ ଚକଆଠା ସୁଟ୍‌କେଶ୍‌ରେ ଭର୍ତ୍ତି କରିନେବ, କିଛି ଅସୁବିଧା ନାହିଁ । ଶୀତ ଶୀତ ଲାଗୁଛି । ଶାଲ୍‌ଟା ବାହାର କରିନେବ ସେ । ଅନ୍ଧାର ଭିତରଦେଇ କାଚ ଝରକାରୁ ଅନାଇବାବେଳକୁ ତାକୁ ବ୍ୟସ୍ତ ଲାଗିଲା । ବାହାରେ ବର୍ଷା । କଲିକତାରେ ବର୍ଷା ହେଲେ ଯେ କି ଅବସ୍ଥା ଯେ କଥା ସେ ପାଠପଢ଼ିବାବେଳୁ ଜାଣିଛି । ପ୍ରାୟ ଅଧରାତି ହେଲାଣି ! ରାତି ଦୁଇଟାରେ ଟ୍ୟାକ୍‌ସି ଧରିବା ତା ପକ୍ଷରେ ବା କେଉଁ ସୁବିଧାର କାମ ! ନା, ଷ୍ଟେସନ୍ ଓ୍ୱେଟିଂରୁମ୍‌ରେ ସକାଳ ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିବାକୁ ପଡ଼ିବ ।

ହଠାତ୍ ମନେ ପଡ଼ିଗଲା—ସୁନନ୍ଦା ତା ଚିଠିର ଉତ୍ତରରେ ଲେଖିଥିଲା ଯେ ସେ ସକାଳୁ ବାହାରି ଯିବ ଦାର୍ଜିଲିଂ କୋଡ଼ିଏ ପଚିଶ୍ ଦିନ ପାଇଁ । ଏଣୁ ସକାଳୁ ଯାଇ ନ ପହଞ୍ଚିଲେ ଭୁଲିପକାଇ ସେ ପଳାଇଗଲେ ହଠାତ୍ ରହିବା ପାଇଁ ଆଉ କେଉଁଠି ତାର ଆଶ୍ରୟ ନାହିଁ । ସୁନନ୍ଦା ପେଇଂଗେଷ୍ଟ ତାଙ୍କ ପୂର୍ବବଙ୍ଗର ଜଣେ ବନ୍ଧୁ ଘରେ । ତେଣୁ ସେଠି ବେଶ୍ ରହି ହେବ ଛଅ ଆଠ ମାସ । ଦରକାର ପଡ଼ିଲେ ଦୁଇଏକ ଆହୁରି କିଛିଦିନ, ଟ୍ରେନିଂସାରି କିଛି ବ୍ୟବସ୍ଥା ହେବା ପର୍ଯ୍ୟନ୍ତ । ସେ ଭବିଷ୍ୟତ ନେଇ ବ୍ୟସ୍ତ ନଥିଲା, କାରଣ ଏମ୍: ଏସ୍: ସି: ପରେ ଏମ୍: ଇ: ଡ଼: କରି ସେ କଲିକତାରେ କିଛି ଦିନ ଚାକିରି କରିଥିଲା, ଆଉ ଏବେ ଯେଉଁ ଏଡ଼୍‌ଭାନ୍‌ସଡ଼ ଟ୍ରେନିଂ ଆଧୁନିକ ଶିକ୍ଷା ପଦ୍ଧତିରେ, ସେଇ ଟ୍ରେନିଂ ପରେ କିଛି ଅସୁବିଧା ହେବନି ତାର । ହେଲେ ହଠାତ୍ ନିଜକୁ ଏଇ ଅସମୟଟାରେ କଲିକତାରେ ଏକ ବର୍ଷ !!

ଶେଷ ରାତ୍ରୀ । ଏକୁଟିଆ ଯୁବତୀ ବିପଦରେ ଭୟହେବା ସ୍ୱାଭାବିକ । ନା, ତାକୁ ବିପଦ୍ ଧରି ଯିବାକୁ ପଡ଼ିବ । ସୁନନ୍ଦାକୁ କୌଣସି ପ୍ରକାରେ ମିସ୍ କରିଯାଇ ନ ପାରେ ।

ଷ୍ଟେସନରୁ ବାହାରିବାବେଳକୁ ବର୍ଷାର ପ୍ରକୋପ ବଢ଼ିଛି । ବସ୍‌ଷ୍ଟେଣ୍ଡ ପର୍ଯ୍ୟନ୍ତ ଯିବା ମୁସ୍କିଲ । ପୋର୍ଟିକୋ ପାଖରେ ଟ୍ୟାକ୍‌ସି କେତେଖଣ୍ଡ ଉପରେ ବହୁ ଭିଡ଼ । ପ୍ରାୟ ସମସ୍ତେ ଭାଗୁଆଳି ହୋଇ ଟ୍ୟାକ୍‌ସି ନେଇ ଆଗେଇ ଯାଉଛନ୍ତି । ସେ ଭାବିଲା, ସତ୍ତର କାହାସହ ଚାଲିଗଲେ ସୁରୁଖୁରୁରେ ସେ ଚାଲିଯିବ । ସାହସର ସହିତ ସେ ପାଟିକରି ଉଠିଲା 'ଲେକ୍ ଗାର୍ଡ଼ନ' । କୁଲିଟିଏ ତା ମୁହଁକୁ ଚାହିଁ ଟ୍ୟାକ୍‌ସି ସବୁକୁ ଶୁଣାଇ ଶୁଣାଇ ଚିତ୍କାର କଲା 'ଲେକ୍ ଗାର୍ଡ଼ନ,' 'ଲେକ୍ ଗାର୍ଡ଼ନ' । ଟ୍ୟାକ୍‌ସିଟିଏ ଆଗେଇ ଆସିଲା । କବାଟ ଖୋଲିଗଲା । ସୁଟ୍‌କେଶ୍‌ଟା ହାତରେ ଧରି ଲୁଗାକାନିଟା ମୁଣ୍ଡରେ ଦେଇ ସେ ଦଉଡ଼ିଯାଇ ଟ୍ୟାକ୍‌ସିରେ ବସିଗଲା ।

ଗାଡି ଅଗେଇ ଚାଲିଲା । ସେ ବର୍ତ୍ତମାନ ଟିକିଏ ଆରାମରେ ସିଟ୍‌ରେ ଆଉଜି ଅନ୍ଧାରରେ ଚାହିଁବାକୁ ଚେଷ୍ଟାକଲା, ସହଯାତ୍ରୀ ସବୁ କିଏ ? ହଠାତ୍ ସେ ଚମକି ଉଠିଲା ! ଗାଡ଼ିରେ ସହଯାତ୍ରୀ ମାତ୍ର ଜଣେ । ରାସ୍ତାଆଲୁଅରେ ଧଳାପଗଡ଼ି ତଳେ କଳା କଳା ଦାଢିମାନଙ୍କରୁ ସେ ଠିକ୍ ଅନୁମାନ କରିନେଲା ଯେ ଇଏ ତାର ଗତରାତିର ସହଯାତ୍ରୀ—ସେଇ ଦାନବ । ସେ ଆଶ୍ରୟ ଖୋଜିବାକୁ ଚେଷ୍ଟାକରି ଡ୍ରାଇଭର ଆଡକୁ ଅନାଇ ଆହୁରି ଭୟ ପାଇଗଲା । ସେଇ ପଗଡ଼ି ଆଉ ଦାଢ଼ି ।

ବର୍ତ୍ତମାନ ତାର ଭୟର ଆଉ ସୀମା ନଥିଲା । ବୃଷ୍ଟିର ଧଡ଼ ଧଡ଼ ଶବ୍ଦ ସହିତ ଯେପରି ତାକୁ ଶ୍ୱାସରୁଦ୍ଧ କରୁଥିଲା । ତା ମୁଣ୍ଡରୁ ରକ୍ତ ଓହ୍ଲାଇଯାଇ ମୂର୍ଚ୍ଛା ହେବା ଅବସ୍ଥା । ଗାଡ଼ିର ସିଟ୍‌ଟାକୁ ଗୋଟେ ହାତରେ ଆଉ ଅନ୍ୟ ହାତରେ ସର୍ଦ୍ଦାର ଓ ତା ମଧ୍ୟରେ ଥିବା ସୁଟ୍‌କେଶ୍‌ର ହେଣ୍ଡେଲ୍‌ଟାକୁ ଚିପିଧରି ସେ ବସିରହିଲା । କଣ କରିବ ଚିନ୍ତା କରୁ କରୁ ହଠାତ୍ ତା' ଆଗରେ ବସିଥିବା ସର୍ଦ୍ଦାର ସାମାନ୍ୟ ମୁହଁ ବୁଲାଇ କହିଲା—

"କାହାଁ ଜାନେ ହୋଗା ମା'ଜୀ ? "

ହଠାତ୍ ଯେପରି ବୈଶାଳୀ ଅକୂଳ ସାଗରରେ ଥଳ ପାଇଲା । "ମା'ଜୀ ଡ଼ାକଟା ଶୁଣି ସେ ସ୍ତବ୍ଧ ହୋଇଗଲା । ଏଇ ଦାନବର ମୁହଁରେ ପୁଣି ଏଇ ସମ୍ବୋଧନ 'ମା' । ଭାରତୀୟ ସଭ୍ୟତାର ଏହାହିଁ ମାପକାଠି । କାହିଁକି ମ୍ୟାଡ଼ାମ୍, ବା ମିସ୍, ବା ଅନ୍ୟକିଛି ସମ୍ବୋଧନ ନକରି ଡ୍ରାଇଭରଟା ଯେତେବେଳେ ମା'ଜୀ ସମ୍ବୋଧନ କରିଦେଲା, ବୈଶାଳୀର ହାତମୁଠା ଶିଥିଳ ହୋଇଉଠିଲା । ସେ ଲମ୍ବା ନିଃଶ୍ୱାସଟିଏ ପକାଇ କହିଲା "ଲେକ୍ ଗାର୍ଡ଼ନ ଚଲିଏ ।"

ତାପରେ ଲେକ୍ ଗାର୍ଡ଼ନରେ ବତାଇ ଥିବା ଠିକଣାରେ ପହଞ୍ଚି ଡ୍ରାଇଭର ଗାଡ଼ି ବନ୍ଦ କଲା ଏବଂ ଘର ଆଡ଼କୁ ହାତ ଦେଖାଇ କହିଲା, "ୱହି ହୋଗା" । ବୈଶାଳୀ ଓହ୍ଲାଇ ଓହ୍ଲାଉ କହିଲା "ହାଁ" । ତାପରେ ଟ୍ୟାକ୍ସିଭଡ଼ା ଦେବାପାଇଁ ପଇସା ବାହାର କଲାବେଳକୁ ଏତେ ସମୟ ଧରି ଚୁପ୍ ହୋଇ ବସିଥିବା ଧଳା ପଗଡ଼ିପିନ୍ଧା ସେଇ ସହଯାତ୍ରୀ ଜଣକ କହିଉଠିଲେ—"ରହନେ ଦିଜିୟେ" । ବୈଶାଳୀ ଚେଷ୍ଟାକରି ମଧ୍ୟ ଡ୍ରାଇଭର ହାତରେ ପଇସା ଦେଇପାରିଲାନି । ତା ପରେ ଡ୍ରାଇଭର ଗାଡ଼ିରୁ ଓହ୍ଲାଇ ବୈଶାଳୀର ସୁଟ୍‌କେଶ ହାତକୁ ନେଲା । ବୈଶାଳୀ ଯେତେ ମନାକଲେବି ମାନିଲାନି ସେ । ଭିତରୁ ଥାଇ ଧଳା-ପଗଡ଼ିପିନ୍ଧା ସର୍ଦ୍ଦାର କହିଲା—"ଆପ୍ ମନା ମତ୍ କରିଏ । ରାତକା ଟାଇମ୍ ହେ, ଆପକୋ ଘରମେ ଘୁସନେ ତକ ପହୁଞ୍ଚାନା ଚାହିଏ ।" ସତେ ଯେପରି ମଣିଷଟା ବୈଶାଳୀର ଗାର୍ଡ଼ିଏନ୍ । ବୈଶାଳୀ ମନାକରି ପାରିଲାନି । ସୁନନ୍ଦା କବାଟ ଖୋଲି ତାକୁ ଭିତରକୁ ନନେଲା ପର୍ଯ୍ୟନ୍ତ ସେ ଜଗି ରହିଥିଲା ।

ସୁନନ୍ଦା କବାଟ ବନ୍ଦ କରୁ କରୁ କହିଲା "ଠିକ୍ ସମୟରେ ଆସିଚ୍ । ମୁଁ ଭାବିଥିଲି ତୁ ବୋଧେ ଆସିବୁନି, ମୋର ପ୍ରୋଗ୍ରାମ ତ ତୋତେ ଜଣାଥିଲା, କାଲି ପର୍ଯ୍ୟନ୍ତ ନଆସିବାରୁ ମୁଁ ଭାବିଲି ତୁ ଆଉ ଆସିବୁନି । ଆଉ ଘଣ୍ଟାଟେ ଡେରି ହୋଇଥିଲେ—"

ଡେରି ହୋଇଥିଲେ ଏଇ ବିଷାକ୍ତ ସଂସାରରେ ଅମୃତର ସନ୍ଧାନ କରିବାକୁ ବିଶେଷ କିଛି ଅସୁବିଧା ହୋଇନଥାନ୍ତା, ହଠାତ୍ ଅନୁଭବ କରୁଥିଲା ବୈଶାଳୀ ।



# ଆଲୁଅରେ ଅନ୍ଧାର

ଣରେନ୍ଦ୍ର ମୋହନ ମିଶ୍ରଙ୍କୁ ଆପଣମାନେ ସମସ୍ତେ ନହେଲେବି, ଯେଉଁମାନେ ପତ୍ର-ପତ୍ରିକା ଓଲଟାନ୍ତି ନିଶ୍ଚୟ ଜାଣିଥିବେ । ପରିଚୟ ନଥିଲେବି ତାଙ୍କ କବିତା ପଢ଼ିଥିବେ ନିଶ୍ଚୟ । କବିତା ନ ପଢ଼ିଥିଲେବି ପଢ଼ିଛି ବୋଲି ବାଁରେଇ ଦେଇ ସାହିତ୍ୟିକ ବନ୍ଧୁ ବା ସାହିତ୍ୟାନୁରାଗୀଙ୍କ ସଭାରେ କହିଥିବେ । କାରଣ ସାହିତ୍ୟ—ଜଗତରେ ତାଙ୍କୁ ନଜାଣିଥିବା ଲୋକ ନାହିଁ କହିଲେ ଚଳେ । ଆଉ ଆପଣ କେତେବେଳେ ଏମିତି ଡାକ୍ତରଙ୍କ ଦାଣ୍ଡଦୁଆରେ ବସି ଅପେକ୍ଷା କଲାବେଳେ ବା ସେଲୁନରେ ବାଳକାଟିବାକୁ ଅପେକ୍ଷା କରିଥିବା ବେଳେ ଦୁଇ ଚାରି ପୃଷ୍ଠା ଛିଡ଼ିଯାଇ ଟେବୁଲ ଉପରେ ପଡ଼ିଥିବା ମାଗାଜିନରୁ ଏ ଗପଟା ପଢ଼ୁଥିବେତ ଆପଣ ବରଂ ଆଉ ନପଢ଼ିବା ଭଲ । କିନ୍ତୁ କ୍ଷତିନାହିଁ ପଢ଼ିଲେ, ହେଲେ ସେଟା ଗଳ୍ପଭଳି ଲାଗିବ ନାହିଁ ବୋଲି ମୋର କହିବା କଥା—କହିଦେଲି ।

ହଁ ସ୍ତ୍ରୀଙ୍କୁ ନେଇ ହଠାତ୍ ଏତେବର୍ଷ ପରେ ଡାକ୍ତରଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିବ ଣରେନ୍ଦ୍ର ମୋହନ ମିଶ୍ର ଭାବି ନଥିଲେ । ଆହା ସେ କି ଲଜ୍ଜା ! ନା ଠିକ୍ ଲଜ୍ଜା ନୁହେଁ ; ଭିନଟା ଝିଅ ପରେ ଟିକେ ଡେ଼ରିରେ ସ୍ତ୍ରୀ ଅନ୍ତଃସତ୍ତ୍ୱା । ଏଇଟା ବୋଧହୁଏ ବହୁ ପରିବାରରେ ଦେଖାଯାଏ । ପୁଅଟିଏ ପାଇଁ ଲୋଭ ଠିକ୍ ନଥିଲେବି ସେଇ ହାଲ୍ଲୀକା ଲଡ଼୍ଡୁ । ପଢ଼ିବା ଦିନରୁ ସେ ଆଦର୍ଶବାଦୀ । କଲେଜରେ ଶିକ୍ଷକତା ଆରମ୍ଭ କରିବାକୁ ଯାଇ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି ତାଙ୍କର ଏଇ ଆଦର୍ଶବାଦ ପାଇଁ । ସେ ସାଙ୍ଗ ଶିକ୍ଷକ-ମାନଙ୍କ ମେସରେ ରହିପାରି ନାହାନ୍ତି, କାରଣ ସେଠି ସକାଳ ୭ରୁ ରାତି

୧୨ ପର୍ଯ୍ୟନ୍ତ ଲୁହାକୁ ଲୁହା ଟ୍ୟୁସନର ଅତ୍ୟାଗ୍ରର ସହ୍ୟପାରନ୍ତି ନାହିଁ । କଲେଜରେ କ୍ଲାସ ଗୁଡ଼ାକରେ ଯେଉଁ ଶିକ୍ଷକମାନେ ପଢ଼ାରେ ତିଳକର ଅଧ୍ୟାପନ ଗଳ୍ପକର, ଆଉ ଅଧ୍ୟାପନ କ୍ଲାସ ସସ୍‌ପେଣ୍ଡ କର ପିଲଙ୍କର ବାହା ବାହା ନେଇ, ଏଣେ ସେଇ ବାକଆ ପଢାକୁ ଟ୍ୟୁସନରେ ଶେଷ କରବାକୁ ପେଶା କରଥାନ୍ତି ; ତାଙ୍କୁ ସେ ମୁହେଁ ମୁହେଁ ଶୁଣାଇବାକୁ ପଛାନ୍ତି ନାହିଁ । ଏଣୁ ତାଙ୍କ କଲେଜ ମହଲରେ ସେ ବେଶ୍ ଏକଗୁଣିଆ । ଦରକାର ପଡ଼ିଲେ କଏ ସାହାଯ୍ୟ କରବାକୁ ଆଗେଇ ଆସନ୍ତେ କ ନା ସନ୍ଦେହ । ପ୍ରଥମ ଡ଼େଲିଭେର ବେଳେ ବ୍ୟସ୍ତ ହେବାକୁ ଚଡନ ଜମା, କାରଣ ସବୁ ବ୍ୟବସ୍ଥା ଶଶୁର ଘର ଆଡ଼୍ର ହୋଇଥିଲ— ଶଶୁର ସେତେବେଳେ କମ୍ପାନ ଗୃକଣରେ ବଡ ଗୃକଣଆ । ତା ତଳ ବେଳକୁ ଶଶୁର ଋଟାୟାର କରବାର ଦୁଇମାସ ହୋଇଥିଲ, ଏଣୁ ସେଇ ପୁରୁଣା ଖାତରରେ ଡ଼ାକ୍ତରଣୀଙ୍କ ପରାମର୍ଶ, କେବନ ଇତ୍ୟାଦ ମିଳବା ଠାରୁ ଅନ୍ୟ ସବୁ ସୁବ୍ୟବସ୍ଥା ହୋଇଯାଇଥିଲ । ଶେଷଟା ବେଳକୁ ଆଉ ଶଶୁର ଘରକୁ ନ ପଠାଇ ଷ୍ଟେଟ ସହରର ଡାକ୍ତର, ଏତେବଡ଼ ନାମଜାଦା କବଙ୍କର କଚ୍ଛୁ ନକର ପାରଲେବ, ଡେଲିଭେର ପାଇଁ ସମସ୍ତ ପ୍ରକାର ସାହାଯ୍ୟ, ସେମ୍ପଲ ଔଷଧ ଇତ୍ୟାଦ ଦେଇ, ଏବଂ ତାଙ୍କର ସବୁ ଷ୍ଟାଫଙ୍କୁ ନେଇ ଘରେ ଡେଲିଭେର କରଇବାରେ କଚ୍ଛୁ ହେଲା କରନଥିଲେ । ଆଉ ସେଇ ଡ଼ାକ୍ତର ମନମୋହନଙ୍କୁ ମନେ ରଖିବାକୁ ସେ ସାନଝିଅର ନାମ ଦେଇଥିଲେ ମୋହନା ।

ସ୍ତ୍ରୀ ଭିତରେ ସେ ଆହୁର ବଡ କବ ହୋଇଚନ୍ତି, ଏଠି ସେଠି ଏୱ୍ୟାର୍ଡ଼ ପାଇଁଚନ୍ତି, ଲେକ୍‌ଚରରୁ ରଡ଼ାର ହୋଇ ବଡ଼ କଲେଜକୁ ଆସିଛନ୍ତି । କନ୍ତୁ ସବୁଦନେ ତନୋଟି ଝିଅଙ୍କର ଅନ୍ୟମାନଙ୍କ ପର ସାମାନ୍ୟ ସୌଖୀନ ଜୀବନର ଦାବ ସେ ସ୍ତ୍ରୀଙ୍କ ପାଖରୁ ବାରମ୍ବାର କାଲୁତ ମିନତ ଠାରୁ ଆରମ୍ଭ କର ତିକ୍ତ ଗରମାଗରମ ପର୍ଯ୍ୟନ୍ତ ପାଇଚନ୍ତି । କ୍ଲାସକୁ ପଢାଇବାକୁ ଯିବା ପାଇଁ ସକାଳୁ ୪ଘଣ୍ଟା ନଜେ କଣ ଏ ବୟସରେ ପଢିବାକୁ ପଡେ—ଆଶ୍ଚର୍ଯ୍ୟ ହୁଅନ୍ତି ଶ୍ରୀମତୀ ମିଶ୍ର । ହଁ ସାଇନସ୍ ପାଠ ହେଲେ ବ ଦନକୁ ଦନ ବଜ୍ଞାନ ଆଗେଇ ଚାଲଚ ; ନୂଆ ନୂଆ ଥିଓର, ଉଦ୍‌ଭାବନ ବଷୟରେ ସବୁ ଜାଣିବା ଦରକାର । ଆର୍ଟସ, ପୁଣି ସେଥିରେ ଇଂରାଜୀ ଲିଟରେଚରରେ କଣ ପଢିବା ବା ଦରକାର ! ମୋତେ କହଲେ

ମୁଁ ମୋର ବି. ଏ. ପାଠର ଅଭିଜ୍ଞତାରୁ ଭୂଗୋଳଟା ଛାଡ଼ି ଦେଇ ଆସିଥିଲି । ଏଇଟା ଗୋଟେ ଘୋଷା ଶ୍ରୀମତୀ ମିଶ୍ରଙ୍କର । "ଆ ହା ହା—କଣ ଅସୁବିଧା ହେଉଛି କହିଲ ; ଖାଇବା ପିଇବା, ଲୁଗାପଟା କେଉଁଥିରେ ଅଭାବ କଣ ଅଛି ? ହଁ ତାଙ୍କ ଘର ପରି ଅଧାଦିନ ଭିସିଆର୍‌ରେ ସିନେମା କି ମାସକୁ ମାସ ନୂଆ ସିଲ୍‌କ ଶାଢ଼ୀ ନାଇ ଆମର—ଏଇଆତ !" ଶ୍ରୀମତୀ ମହା ଓସ୍ତାଦ୍; କଥା କାଟି କହୁଛ ସେ କହନ୍ତି ନାହିଁ । "ଆମେ ଆଜ ଆଉ ଦୁଇପଇସା ଅଧିକା କଲେ, ତା ଉପର ସ୍ତରରେ ଯେଉଁମାନେ ଅଛନ୍ତି ତାଙ୍କ ଉପରେ ନଜର ପଡ଼ିବ ଆଉ ଦୁଇପଇସା ପୁଣି ଦରକାର ପଡ଼ିବ ; ଯାର ଶେଷନାହିଁ ।" ବୁଝାଇବାକୁ ବାହାରନ୍ତି ମିଶ୍ରେ । ଆଉ ବାରମ୍ବାର କହନ୍ତି ସେଇ କଥା, ଠିକ କ୍ଲାସରେ ଅବୁଝା ପିଲଙ୍କ ଭିତରୁ ଗୋଟି ଗୋଟି ସମସ୍ତେ ନବୁଝିଲା ପର୍ଯ୍ୟନ୍ତ ।

ହଠାତ୍ ୮ବର୍ଷ ପରେ ୪ର୍ଥ ସନ୍ତାନ ପାଇଁ ବାରମ୍ବାର ଡ଼ାକ୍ତରଣୀଙ୍କ ପାଖକୁ ଯିବାକୁ ପଡ଼ିବ; କାରଣ ଟିକେ ବେଶୀ ବୟସରେ ପ୍ରୋବ୍ଲେମ ଟିକିଏ ହୁଏ । ଆଜକାଲିକା ଟୋକା ଲେକ୍‌ଚରରଙ୍କୁ ପଚାରିବାକୁ କେମିତି ଲାଜ ଲାଜ ଲାଗିଲା । ସେଦିନ କଥା କହୁ କହୁ ସେ ଇକୋନୋମିକ୍‌ସ ଏଚୋଡ଼ି (HOD)ଙ୍କୁ ପଚାରି ବୁଝିନେଲେ ସହରରେ ଭଲ ଡ଼ାକ୍ତରଣୀ କିଏ । ଏଚ୍ଓଡ଼ି ଏବେ ଅପରେସନ କରାଇଥିଲେ ତାଙ୍କ ସ୍ତ୍ରୀଙ୍କର । ଅବଶ୍ୟ ତାଙ୍କୁ କେବଳ ମିଳିବାରେ କି ତାଙ୍କ ଦୁଆରକୁ ଡାକ୍ତରାଣୀଙ୍କ ଗାଡ଼ି ବାରମ୍ବାର ଆସିବାରେ କିଛି ଅସୁବିଧା ନଥିଲା । ବେଶୀ ନୁହେଁ, ସକାଳେ ୨ଟା ଓପର ଓଳି ୨ଟା ପିଲାଙ୍କୁ କୋଚିଂକରନ୍ତି ସେ, ଟ୍ୟୁସନ ନୁହେଁ । ଫାଷ୍ଟକ୍ଲାସ ପାଇବା ପିଲାଗୁଡ଼ାକ, ଟିକେ କୋଚିଂ କରିଦେଲେ ହେଲା—ଯୋଉଟା ଡ଼ିପାର୍ଟମେଣ୍ଟର ପ୍ରେଷ୍ଟିଜ୍ କଥା ।

ଡାକ୍ତରଙ୍କ ପରୀକ୍ଷା ପାଇଁ ଏପଏଣ୍ଟମେଣ୍ଟ ଠିକ୍ ହୋଇଗଲା । ପରୀକ୍ଷାକରି ଡାକ୍ତରଙ୍କ ମୁହଁ ଢଙ୍ଗ ଦେଖି ମିଶ୍ରେ ଟିକେ ବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ବ୍ୟସ୍ତତା ଲକ୍ଷ୍ୟକରି ଡାକ୍ତର କହିଲେ "ନା ସେମିତି ବିଶେଷ ବ୍ୟସ୍ତ ହେବାର ନାହିଁ । ତେବେ ଆପଣ କେଉଁଠି ଗାଇ ଏବେଠୁ

ଦରଖାସ୍ତ କରି ରଖନ୍ତୁ । ଠିକେ କମ୍ପ୍ଲିକେସନ ନିଶ୍ଚୟ ହେବ । ଏତେ ଲେଟ୍ ଏଜ୍‌ରେ ଡ଼େଲିଭେରି ।'' ମିଶ୍ରେ ନିଜ ଜନ୍ମ ସମୟରେ ମାଙ୍କର ବୟସ ଅନୁମାନ କରି, କରୁ ଭାବୁଥିଲେ 'କଣ ଲେଟ୍ ଏଜ୍ ଯେ !' ତାଙ୍କ ଭାବନାରେ ବାଧାଦେଇ ଏଟେଣ୍ଡେଣ୍ଟ କହିଲା "ସାର୍ ଫିଫ୍ଟି ଟ୍ୱେଣ୍ଟିଙ୍କା ।'' "ଟ୍ୱେଣ୍ଟିଙ୍କା !'' ବ୍ୟସ୍ତ ହେଲେ ମିଶ୍ରେ, ଭାବିଲେ 'କାହିଁକି ମୁଁ ତ ଡ଼ାକ୍ତରଖାନାରେ ଦେଖାଇବାକୁ ମୋର କିଛି ଅସୁବିଧା ନଥିଲା । କେତେବର୍ଷ ହେଲା ପି:ଏଲ୍: ନେଇନି, ତାର ହିସାବ ନାହିଁ । ଘରକୁ ଆସିବାକୁ କୁହାଗଲା କାହିଁକି ?' ଅନ୍ୟ ପେସେଣ୍ଟ୍ ବ୍ୟସ୍ତ ହେଲେଣି ବୋଲି ଆଟେଣ୍ଡାଣ୍ଟ ବ୍ୟସ୍ତ ହେବାରୁ ବାଧ୍ୟ ହୋଇ ଟଙ୍କାଟା ବାହାର କରି ଧରାଇ ଦେଇ, ସେ ରାଗ ଗର ଗର ହୋଇ ସ୍ତ୍ରୀଙ୍କୁ ପଛରେ ପକାଇ ବାହାରି ଆସିଲେ ଡାକ୍ତରଙ୍କ ଚେମ୍ବରରୁ ।

ସ୍ତ୍ରୀ ତାଙ୍କ ପାଖରେ ପହଞ୍ଚିଲେଣି କି ନା ପାଖକୁ ନଜର ନକରି ଆରମ୍ଭ କଲେ—"ବଡ଼ ଆଶ୍ଚର୍ଯ୍ୟ କଥା ; ଘରକୁ ଡ଼ାକି ଏକା ଥରକୁ ଯଦି ଏମିତି ଏମାନେ ଡ଼ାକାତି କରିବେ—''

ତାଙ୍କ କଥାରେ ବାଧାଦେଇ ଶ୍ରୀମତୀ କହିଲେ "ଓହୋ କେତେ ପାଟିଟା କରୁଚ ?"

ଅଗତ୍ୟା ଚୁପ ହେଲେ ବୀରେନ୍ଦ୍ର ମିଶ୍ର ।

ଏମିତି ଥରକୁ ଥର ପାଞ୍ଚଥର ଖଣ୍ଡେ ଦେଖାଇବା ବେଳକୁ ମାସ ଗୁଡ଼ାକର ବଜେଟ କେମିତି ଅସୁବିଧା ହୋଇଗଲା ବୀରେନ୍ଦ୍ର ମିଶ୍ରଙ୍କର । କଲେଜକୁ ରିକ୍‌ସାରେ ନଯାଇ ସେ ସାଇକେଲରେ ଯିବାକୁ ଆରମ୍ଭ କଲେଣି । ଦୁଇ ମାସ ହେଲା ସାନଝିଅ କହିଥିଲା ନୂଆ ଡସେକ୍‌ସନ ବକ୍‌ସ୍‌ଟାଏ କିଣିବା ପାଇଁ । ସେଇ ବଡ଼ଅପାର ବାକ୍‌ସଟାରେ ଆଉ କାମ ଚଳୁନି । ସେଇଟା ମଧ୍ୟ ଝିଅକୁ ହଠାତ୍ ହଁ ବୋଲି କହିପାରୁ ନାହାନ୍ତି ସେ । ଆଗରେ ପୁଣି ଅଛି କେବଳ ଆଉ କମ୍ପ୍ଲିକେସନ । କମ୍ପ୍ଲିକେସନଟା ସତ ନା ମନଗଢ଼ା ! 'ଏ ଗୁଡ଼ାକୁ ଜମା ବିଶ୍ୱାସ ନାହିଁ ।' ଭଙ୍ଗା ହାଡ଼ର ପୁରୁଣା X-ray ଫଟୋ

ଦେଖାଇ ରୋଗୀକୁ ପ୍ଲାଷ୍ଟର କରିପକାଇ ପଇସା ନେଇଚି ସେ ଡ଼ାକ୍ତର ମହାନ୍ତି; ଘର କଲାଣି ଦୁଇ ଦୁଇଟା । ତାଙ୍କ ଗାଁର, ହେଲେ କଣ ହେଲା, ଠିକ୍ ଜାଣନ୍ତି ସେ ତାକୁ । ଏତେକରି ଲେଖିଥିଲେ, ଶଳ୍ପା ତାର ବନ୍ଧୁ କଏ ଥିବ ପଦେ ଲେଖିଦେବାକୁ—ଏଠି ଶଠିଫିଠି ବନ୍ଧୁବାନ୍ଧବ କିଛି କାମ କରେନି ବୋଲି ସେ ଜାଣି ନାହାନ୍ତି ବୋଧେ ।

ମନ ଲାଗୁନି କ୍ଲାସରେ । ପଢ଼ିଆସି ନାହାନ୍ତି କିଛି ସେ । କୋର୍ସ ବର୍ଷକୁ ବର୍ଷ ବଦଳି ଯାଉଚି, ନୂଆ ନୂଆ ବହି ଆଉ ନୋଟସ୍ ଷଣ୍ଡିରେ ସାହାଯ୍ୟ କରିବା ପାଇଁ । ଏଣୁ ତାଙ୍କୁ ଟିକେ ପରିଶ୍ରମ ପଡ଼େ । ସେଇଟା କିନ୍ତୁ ତାଙ୍କର କର୍ତ୍ତବ୍ୟ । ଏଣୁ ତାଙ୍କୁ ସେଥିରୁ ଏକ ଐଶ୍ୱରିକ ଆନନ୍ଦ ମିଳେ । ପ୍ରତି ଗ୍ରୁପର ଆଖି ଆଉ ମୁହଁରୁ ସ୍ପଷ୍ଟ ଉପଲବ୍ଧି ଭାବ ନଦେଖିଲା ପର୍ଯ୍ୟନ୍ତ ସେ ପଢ଼ାନ୍ତି, ବାରମ୍ବାର ପଢ଼ାନ୍ତି । ଆଜି କିନ୍ତୁ ଆଖି ଆଗରେ ତାଙ୍କର "କେବଳ ଆଉ କର୍ମ୍ପ୍ଲିକେସନ୍" ଏକ ଓଜନିଆ ବୋଝ ହୋଇ ତାଙ୍କ ମୁଣ୍ଡଉପରେ ମାଡ଼ିବସିଥିଲା । ହିଷ୍ଟିସିଜମ୍ ପେପରଟା ଆରମ୍ଭ ମାତ୍ର । ଏଣୁତେଣୁ କଣ ଗପଦ କରି କ୍ଲାସ ସାରି ଫେରିଆସିଲେ ସେ ।

କମନ ରୁମ୍‌ରେ ବସି ବହି ଓଲଟାଉ ଓଲଟାଉ ସେଇ 'କେବଳ' ଆଉ 'କର୍ମ୍ପ୍ଲିକେସନ' ଜାଲରେ ଛନ୍ଦହୋଇ ଯାଉଥିଲେ ଆହୁରି ଆହୁରି । ରୁମ୍‌ଟା ଖାଲି । କ୍ଲାସ ବି ଆଉ ନାହିଁ । ହେଲେ ସେ ଉଠି ପାରୁନଥିଲେ । ପଶି ଆସିଲେ ଫିଫ୍ଥ୍ ଇୟାରର ସୁମନ୍ତ ଓ ରତିକାନ୍ତ "ମେ ଉଇ କମ୍ ଇନ୍ ସାର୍" କହି, କିଛି ଉତ୍ତରକୁ ଅପେକ୍ଷା ନରଖି । ସେମାନେ ଭିତରକୁ ଆସି ଆରମ୍ଭ କଲେ "ସାର୍ କେତେବେଳେ ଟିକେ ସମୟ ହେଲେ ଆମେ ଆସନ୍ତୁ କୋଚିଂ ପାଇଁ । ଦୟାକରି ଆମପାଇଁ ଘଣ୍ଟାଏ ସମୟ ଦେବନି ସାର୍ ?"

ହଠାତ୍ ବୀରେନ୍ଦ୍ରମୋହନ ମିଶ୍ର ଭାବିଲେ, ଏଇ କେବଳ୍ ଆଉ କର୍ମ୍ପ୍ଲିକେସନର ମୁକାବିଲା ପାଇଁ ସତେ ଯେପରି ସେ ଅପେକ୍ଷା କରି ବସିଥିଲେ, କ୍ଲାସପରେ ଏଇ କମନ୍ରୁମରେ ଏଇ କୋଚିଂର ଗରାଖ ସୁମନ୍ତ ଓ ରତିକାନ୍ତ ପାଇଁ ।

□□

# ସଂସାର ଭିତରେ ଘର କରିଥିଲେ

ଅବନୀବାବୁଙ୍କୁ ଗୋଟେ ଟାଇମ୍ ଦେଇଥିଲେ ସଂସାର ଉଜୁଡ଼ିଗଲେ ବି ତାଙ୍କୁ କେହି ଟଳାଇ ପାରିବେନି । ଆଗରୁ ଗାଁରୁ ବାସ୍ ବାହାରେ । ଦୂରକୁ ଯିବାକୁ ପଡ଼େନି । ଦ୍ୱାର ମୁହଁରେ ବାସ୍ ଆସି ଠିଆହୁଏ ; ତଥାପି ସକାଳ ୭ଟା ବେଳେ ବାହାରିବାରଥିଲେ ୪ଟାବେଳୁ ଉଠି ଗାଧୋଇ ପାଧୋଇ ୫ଟାବେଳକୁ ତିଆର । କରୁଣାଙ୍କର କିନ୍ତୁ ଏଇ ସମୟଜ୍ଞାନଟା ନାହିଁ ବୋଲି କୁଆଡ଼େ ବାହାରିବା କଥା ଉଠିଲେ ଦୁଇ ଜଣଙ୍କର ବୋଲ୍ ବୋଲି ଝିକେ ହୋଇଥାଏ । ତା'ପରେ ଯେତେବେଳେ ପୁଅ ସବୁ ପାରିହୋଇ-ଝିଅ ବୋହୁ ଉଠିଗଲେ, ପୁରୁଣା ଗାଡ଼ିଟା ଯେଉଁଟା ଆଗରୁ ଖାଲି ସପ୍ତାହରେ ଥରେ ପୋଖରୀ ପାଖକୁ ଧୁଆ ଧୋଇ ହେବାକୁ ଯାଏ ବା କେତେବେଳେ କେମିତି ଡାକବଙ୍ଗଲାକୁ ବଡ଼ବଡ଼ିଆ ଆସିଥିଲେ ଅବନୀବାବୁ ଦେଖାକରିବାକୁ ଯେତେ ମୁହେଁ ଦେଖେଇବାକୁ ଯାଆନ୍ତି, ବିକି ଦେଇ ନୂଆ ଏମ୍ବାସାଡ଼ର ଗାଡିଟା ଆସିଲା ସେତେବେଳେ କରୁଣାଦେବୀ ଶାନ୍ତିରେ ନିଃଶ୍ୱାସ ମାରିଲେ । କୁଆଡ଼େ ବାହାରିବା କଥା ହେଲେ ବଡ଼ ହଟାହଟି ଛରନ୍ତ ଏ ମଣିଷଟା । ଏବେ ଝିକେ ଶାନ୍ତିରେ ସୁରୁଖୁରୁରେ ବାହାରି ହେବ ।

‘ନା ଯେଉଁ କଥାକୁ ସେଇକଥା । ସକାଳ ୧୦ଟାରୁ ବାହାରିବା କଥା, ନଟାବେଳୁ ପଛରେ ଲଗେଇଚନ୍ତି—ରେଡ଼ିହୁଅ ରେଡ଼ିହୁଅ ; ଡ଼େରି ହୋଇଯିବ । ଆଜି ୧୦ଟା ବାଜିବାକୁ ୧୫ ମିନିଟରୁ ଯାଇ ଗାଡ଼ିରେ ଜିନିଷ ଲଦା ଆରମ୍ଭ କଲେଣି ।’

“ଆରେ ବାବା, ନିଜଘରୁ ବାହାରିବ, ପୁଅ ପାଖକୁ ଯିବ, ଏମିତି ଘୋଡ଼ାରେ ଚଢ଼ିବା କଣ ଦରକାର । ଆରାମରେ ନିଜ ସୁବିଧାରେ ଯିବା କଥା । ଆଉ ଦଶବାଜିଲା ଦଶବାଜିଲା—ଦଶ କଣ ବାଜନ୍ତା ନାହିଁ—ବାଜୁ, ଏଗାର ବାଜୁ, ବାର ବାଜୁ—କଣ ହେଲା ସେଥିରୁ ? ଏଇଟା କଣ ଟ୍ରେନ୍ ହୋଇଚି ନା ବସ୍ ହୋଇଚି ଯେ ତାଙ୍କ ଟାଇମକୁ ଜଗି ମୁଁ ଧାଇଁବି ?”

‘ମୋ ନିଜଗାଡ଼ି କାହିଁକି କଲି । ମୋ ନିଜଗାଡ଼ିରେ ଯିବି, ନିଜ ଟାଇମ୍‌ରେ ଯିବି । ମୋତେ କେହି ଅର୍ଡର କରିପାରିବେ ନାହିଁ ।’ ଅବନୀବାବୁ ଗାଡ଼ିରେ ନିଜ ଜିନିଷ ଭର୍ତ୍ତିକରି ବସି ରହନ୍ତି ବାରଣ୍ଡାରେ । କରୁଣା ତାଙ୍କ ଘରଙ୍କରେ ବସି ପୁଅପାଇଁ ଝିଅଙ୍କ ପାଇଁ ଅଂଗୁର, ବଡ଼ି, ଭଜାମୁଗଡ଼ାଲି ଇତ୍ୟାଦି ଇତ୍ୟାଦି ସଜାଇ ରଖି ବାହାରିବା ବେଳକୁ ହୁଏତ ଖାଇବା ବେଳ ହୋଇଯାଇ ଥାଏ କି କେବେ କେମିତି ପରଦିନକୁ ପ୍ରୋଗ୍ରାମ ଘୁଞ୍ଚାଇବାକୁ ପଡ଼େ ।

ଅବନୀବାବୁ କହନ୍ତି “ଆଗରୁ କହିଲିନି ; ନାହିଁ ଆଜି ବାହାରି ହେବନି, କାଲି ବାହାରିବା ; ୧୦ଟାରେ ନୁହେଁ ୧୧ଟାରେ ଯିବା । ତମ ଗାଡ଼ି—ତମ ଟାଇମ୍ । ସେଇଟା କଥା ଆଗରୁ ଠିକ୍ କର, ଆଉ ସେଇ ଅନୁସାରେ ନିଜକୁ ତିଆରି କର ।”

କରୁଣା କଥା ନବଢ଼େଇବାକୁ ହୁଏତ ଚୁପ ରହନ୍ତି ; କିନ୍ତୁ ଗ୍ରହଣ କରିନେଇ ପାରନ୍ତିନି ପୂରାଭାବରେ । 'ପିଲା ସବୁ ବଢିଗଲେ, ମଣିଷ ହେଲେ ଚାକିରି କଲେ । ସେତେବେଳେ ସ୍କୁଲ କଲେଜ ଟାଇମ୍ ନେଇ ଘରକାମ ବନ୍ଧା । ତମ କଚେରି ନେଇ ରନ୍ଧାବଢା ଖିଆପିଆ ସବୁ ଟାଇମ୍ ବନ୍ଧାଥିଲା । ଏବେ ମୋ ଟାଇମ୍ ମୋର—ତମକୁ କଚେରି ଯିବାକୁ ପଡ଼ୁନି । ତେବେ ସେ ଟାଇମ୍‌ର ଚାକର ହୋଇ ମୁଁ କାହିଁକି ରହିବି ମ ଟାଇମ୍‌ଟା ତ ମୋର— ମୁଁ ଯେତେବେଳେ ଯାହା ଇଚ୍ଛା ସେଇଟା କରିବି ନାହିଁ କାହିଁକିନା ?' ହେଲେ ନୀରବ ରହିବା କେତେବେଳେ ଦରକାର ସେ ଜାଣନ୍ତି । ଘରକରି ଚାଳିଶବର୍ଷ ବିତିଗଲା କେତେବେଳେ ଥଣ୍ଡା କି ଗରମ ତାର ହିସାବ ସେ ଠିକ ରଖନ୍ତି । ଦରକାର ବେଳେ ନିଜର ଶେଷକଥା ସେ ଠିକ ଜାହିର କରିନିଅନ୍ତି, କିନ୍ତୁ ବାଗ ଭଙ୍ଗି-ସମୟ ଦେଖି ।

ଅବନୀବାବୁ ଅଗତ୍ୟା ଦେଖିଲେ ଅବସ୍ଥା ଯେପରି ହେଲାଣି ଆଜି ୩ଟା ଆଗରୁ ବାହାରି ହେବନି । ୩ଟାରେ ବାହାରିଲେ ବି ସନ୍ଧ୍ୟା ହୋଇଯିବ, ଆଉ ରାତି-ଜର୍ଣ୍ଣିଟାକୁ ସେ ସବୁବେଳେ ଅପସନ୍ଦ କରନ୍ତି । ସେ ଲୁଗା-ବଦଳାଇ ତାଙ୍କ ପଢ଼ାଘରର ବଡବଡ଼ ଝରକା ସବୁ ଖୋଲି ଆମ୍ବତୋଟା ଆଡ଼କୁ ମୁହଁକରି ବସିଗଲେ ବହିଟିଏ ଧରି ।

ବହି ଖଣ୍ଡିକ ହାତରେ ଧରି ପଢ଼ୁ ପଢ଼ୁ କେତେବେଳେ ଆଖିରେ ଆସି ଲାଗିଯାଇଛି । ଦୂର ଆମ୍ବଗଛ ସନ୍ଧିରେ ସେଇ ଅନ୍ଧାରିଆ ଅଜ୍ଞାତକୁ

ସେ ଚୁହିଁ ରହିଥିଲେ । ସେଠି ଅନ୍ଧାରିଆ ସନ୍ଧିଭିତରେ ସୁଖ ସ୍ମୃତିର ସୂର୍ଯ୍ୟର ଆଲୁଅ ଟିକେ ଟିକେ ଝାପସା ଦେଖାଯାଉଚି । ଆଜି ସେଇ ଝାପସା ଆଲୁଅରେ ସେ ଏଇ ତାଙ୍କ ସୁଖର ସଂସାର ଟିକକ ପ୍ରକୃତ କରୁଣାଙ୍କର ଦାନର ସୀମା ଖୋଜୁଥିଲେ । ବାପାଙ୍କ ଅନ୍ତେ ବଡ଼ଭାଇଙ୍କ ଅତ୍ୟାଚାରରେ ଅନ୍ୟ ଭାଇମାନେ ଯେତେବେଳେ ତଟସ୍ଥ ଓ ଅତିଷ୍ଠ ହୋଇ ତାଙ୍କର ହାତ-ଟେକାକୁ ଚୁହିଁ ରହିଥିଲେ, ଅବନୀବାବୁ ହଠାତ୍ କରନ୍ତି ବିଦ୍ରୋହ । ଗୃହ-ତ୍ୟାଗୀ ହିସାବରେ ସେତେବେଳେ ସେ ଯେଉଁ ଅବସ୍ଥା ; କରୁଣାଙ୍କର କରୁଣାମୟ ସ୍ନେହ ପ୍ରେମରେ ଆବଦ୍ଧ ହୋଇ, ସମସ୍ତଙ୍କ ଅମତ ସତ୍ତ୍ୱେ ବାହାଘର ପରେ, ଏକଚାଟିଆ ଘରକରଣାରେ ଏଇ କରୁଣାଙ୍କର କରୁଣାହିଁ ତାଙ୍କୁ ଦେଇଥିଲା ସଂସାରର ସ୍ୱାଦ । ତାଙ୍କୁ ସଂସାରର କୌଣସି ଚିନ୍ତାରେ ମୁଣ୍ଡ ଘୂରାଇବାକୁ ହୁଏତ ପଡ଼ନ, କିନ୍ତୁ ତା ପାଇଁ ତାଙ୍କୁ କିଛି ତ୍ୟାଗ କରିବାକୁ ପଡ଼ିନି ନିଶ୍ଚୟ । କେବେହେଲେ ଶେଷକଥାଟା ତାଙ୍କର ରହିବା ସେ ମନେକରି ପାରୁନାହାନ୍ତି—କରୁଣାହିଁ ସବୁ ବିଷୟରେ ଶେଷକଥାଟା ଠିକ କରନ୍ତି । ସତରେ ତାଙ୍କର ହଠାତ୍ ଭାବାନ୍ତର ଜାତହେଲା । ସତରେତ ସବୁ କଥାରେ ସେ ଟାଳଦିଏ । କାହିଁ କେଉଁକଥା ତାଙ୍କର ଏଘରେ ରହିଲା ରକମ୍‌ତ ମନେ ପଡ଼ୁନି ! ସେ ମନେ ପକାଇବାକୁ ଚେଷ୍ଟା କଲେ—ସବୁ ବଡ଼ବଡ଼ କାମରେ କରୁଣାଙ୍କର କଥାହିଁ ଶେଷରେ ରହୁଚି । ସେ ମନେ ମନେ ଚିଡ଼ି ଉଠିଲେ "ନା ଆଉ ସହି ହେବନାହିଁ । ଛୁଆ ସବୁ ଥିଲେ ; ମଣିଷ କରିବା, ବାହା ଦେବାର ଝଞ୍ଜାଳ ଥିଲା । ସବୁ କଥା ସେ ବୁଝୁଥିଲା ବୋଲି ମୁଁ ଚୁପ୍ ଥିଲି । ସେ କେଉଁଠୁ ରୋଜଗାର କରୁଥିଲା ନା କଣ ? ସବୁ ପାଇଁ ମୋର ରୋଜଗାର ।"

ସେ ହଠାତ୍ ଭାବିଲେ 'ନା ଗାଡ଼ିଧରି ମୁଁ ଠିକ୍ ବାହାରି ପଡ଼ିବ । ୧୧ଟା ବାଜିବାକୁ ଆହୁରି ୧୦ମିନିଟ୍ ବାକିଅଛି । ସେ ତାରି ଆସୁ ତା ଲୁଆମାନଙ୍କର ଘରଥୋର ଧରି ବାସ୍‌ରେ । ଠିକ୍ ସାଜିବ, ଛୁଟା ହୋଇପଡ଼ି ବୁଲିପଡିଲେ ସେ । ହାତରେ ଲୁଗାପଟା ପିନ୍ଧି ପାନ ଡ଼ିବାଟା ତାଙ୍କ ଆଡକୁ ବଢାଇ ଦେଉ ଦେଉ କରୁଣା କହିଲେ "କ ହୋ ତମେ କଣ ଲୁଙ୍ଗି ବଦଳାଇ ପକାଇଲଣି ? ଚାଲ, ୧୧ଟା ବେଳକୁ ମୁଁ ରେଡ଼ି ନା ନାଇଁ ? ବରଂ ତମେ ଆଜି ଲେଟ୍ ।"

କରୁଣାଙ୍କର କରୁଣାର ଧାରିଟି ପୁଣି ଧୋଇଦେଇଥିଲା ଅବନୀବାବୁଙ୍କ ମନରୁ ସବୁ ଦ୍ୱେଷ ।



# ଧୂସର ଦିଗନ୍ତ

ରବିବାର ପ୍ରାୟ କାହାରି ନା କାହାରି ରିଜର୍ଭେସନ୍ ଥାଏ । 'ଗୃଢପୁର ଫରେଷ୍ଟ ବଙ୍ଗଳା—କେନ୍ଦୁଆରିନା ହାଉସ୍‌ରେ ରବିବାରଟା କଟାଇବା ବାଲେଶ୍ୱର ବା ଭୁବନେଶ୍ୱରର ବଡ଼ବଡ଼ଆଙ୍କ ସଉକ । ସବୁ ଦିନେ ସୁବିଧା ଜୁଟେ ନାହିଁ । ଏଣୁ ରଜତବାବୁ ଯେଉଁଦିନ ଖାଲି ପାଆନ୍ତି, ଶନିବାର ଓପରଓଳି ସ୍ତ୍ରୀ ସୁଜାନାକୁ ନେଇ ବାହାରିପଡ଼ନ୍ତି । ରବିବାର ସକାଳେ ପାନ୍ଥନିବାସର ବ୍ରେକ୍‌ଫାଷ୍ଟ ପରେ ଦିନଟା ଅଳସୁଆ ହୋଇ କଟାଇ ଦିଅନ୍ତି ବଙ୍ଗଳା ବାରନ୍ଦାରେ, ଆଉ ସନ୍ଧ୍ୟା ପରେ ଫେରନ୍ତି । ସତରେ—'କେଉଟ ଧରେ ମାଛ, ଖାଏ କଙ୍କଡ଼ା' ତାଙ୍କ ପ୍ରତି ଠିକ୍ ପ୍ରଯୁଜ୍ୟ । ନିଜେ ଫରେଷ୍ଟ ଅଫିସର, କିନ୍ତୁ ବଙ୍ଗଳାରେ ରହିବା ପାଇଁ ସୁଯୋଗ ଅପେକ୍ଷା କରିବାକୁ ପଡେ ।

ପହଞ୍ଚି ପାଟିକଲେ ବୁଧିଆକୁ । ପୁରୁଣା ଚୌକିଦାର ସେ; ବାପା ତାର ମୟୂରଭଞ୍ଜ ରଜାଙ୍କ ଏଇ ବଙ୍ଗଳାରେ ଚୌକିଦାର ଥିଲା ଆଉ ସେତେବେଳେ ବାପ ପାଖରୁ ଠିକ ଟ୍ରେନିଂ ସେ ନେଇଛି । ଡିପାର୍ଟମେଣ୍ଟର

ବଡସାହେବ ଆସିଲାବେଳକୁ ସବୁ ବ୍ୟବସ୍ଥା ସେ ଠିକ୍ ଠିକ୍ କରିଦିଏ । ଆଜିକାଲି ଅବଶ୍ୟ ପାଖରେ ପାନ୍ଥନିବାସ ହେବା ଦ୍ୱାରା ରନ୍ଧାବଢ଼ା ଇତ୍ୟାଦି ଭିଡ଼ ହଟେଇନି । ବୁଧିଆ ଜୁହାରଟେ ମାରି କବାଟ ଖୋଲୁ ଖୋଲୁ ହସି ହସି କହିଲା "ସାର୍, କାଲି କାହାରି ରିଜାରଭେସନ ନାହିଁ । ବଢ଼ିଆ ଚିଙ୍ଗୁଡ଼ି ଉଠୁଛି ଏବେ ।"

ଗାଡ଼ିରୁ ଜିନିଷପତ୍ର ଆଣୁ ଆଣୁ ମାଙ୍କୁ ଲକ୍ଷ୍ୟକରି କହିଲା "ଇଲିସି ବଢ଼ିଆ ପଡୁଛି ଏବେ । ଦିଟା ଦିନ ରହି ଯାଆନ୍ତୁ ମା ଏଥର ।"

ସୁଜାନାଦେବୀ ଏଇ ୧୫ କିଲୋମିଟର ରାସ୍ତା ଆସି କ୍ଲାନ୍ତ ଅନୁଭବ କରୁଥିଲେ—ଆଗେଇ ଆସି ବେତସୋଫାରେ ନିଜକୁ ଲୋଟାଇ ଦେଇ ଆଖିବୁଜି ବସିପଡ଼ିଲେ । ରଜତବାବୁ ଚା'ଟା ଆଣିବାକୁ କହି ସ୍ତ୍ରୀଙ୍କ ପାଖକୁ ଆସି ବ୍ୟସ୍ତତା ଦେଖାଇ ତାଙ୍କ ପାଖ ଚେୟାରରେ ବସି ପଡ଼ୁ ପଡ଼ୁ କହିଲେ—"କଣ ଦେହ କିଛି ଖରାପ ଲାଗୁଛି କି ?" ସୁଜାନା ମୁଣ୍ଡ ହଲେଇ ଚୁପ ରହିଲେ ।

ରଜତବାବୁ ସିଗାରେଟରେ ନିଆଁ ଲଗାଇ ଲାଇଟର ଓ ସିଗାରେଟ୍ ଟେବୁଲ ଉପରେ ଥୋଇ ଦେଇ ବଗିଚାଆଡ଼କୁ ଆଗେଇଗଲେ । ସମୁଦ୍ର ଧାରରେ କିଛି ଫୁଲଗଛ ପବନ ଦାଉରୁ ରହୁନି । ସେ ଗୋଟେପ୍ରକାର ବଡ଼ ଘାସଜାତୀୟ ଫୁଲଗଛ ଜଙ୍ଗଲରୁ ଆଣି ମାସେହେଲା ଗୋଟେ ସାଇଡରେ ଲଗାଇଥିଲେ ପରୀକ୍ଷା କରିବା ପାଇଁ । ତା ଅବସ୍ଥା ଦେଖିବାକୁ ଆଗେଇ ଗଲେ ସେ । ନଇଁପଡ଼ି ଗଛମୂଳ ପବନରେ କେତେଦୂର ଶକ୍ତ ଅଛି ଦେଖୁ ଦେଖୁ ହଠାତ୍ କାହାର ଖିଲ୍‌ଖିଲ ହସ ଶୁଣି ଚାହିଁ ଦେଖିଲେ; 'ବଙ୍ଗଳା ଆଉଟହାଉସ୍ ପଛପାଖରେ ଗେଟ୍ ଖୋଲି ପୁରୁଷ ସ୍ତ୍ରୀ ଦୁଇଜଣ ହାତ

ଧଇଁସଇଁ ହୋଇ ସମୁଦ୍ର ବାଲି ଉପରେ ଧାଇଁଗଲେ ପାଣିପାଖକୁ । ସେ ସେଇଠି ଛିଡ଼ାହୋଇ ରହିଥିଲେ । ସେଇ ହସର କଲ୍ଲୋଳ ତାଙ୍କ ମନକୁ ହାଲୁକା କରି ଦେଉଥିଲା । ବଙ୍ଗଳା ପଛେ ସୂର୍ଯ୍ୟ ନଇଁ ଆସିଥିଲା । କେଜାଣି କେତେ ଧାଡ଼ିର ଲମ୍ବା ଛାଇ ବାଲି ଉପରେ ନାଲିଆ ଆଲୁଅ ଓ ଛାଇର ଲୁଚକାଳି ଖେଳ ଭିତରେ ସେ ଦୁଇଜଣ ହାତ ଧରାଧରି ହୋଇ ଧାଇଁ ଯାଉଥିଲେ ଦୂରରେ ହଳମୋଡ଼ ଝିଲକର ପାଣି ଭିତରକୁ । ସେମାନେ ଧୀରେ ଧୀରେ ପାନ୍ଥନିବାସର ଅତିଥି ଗହଳରେ ମିଶି ଯାଉଥିଲେ ।

ସତରେ ଏଇ ବାଲି ଉପରେ ଛୁଟି କାଟିବାକୁ କେତେ ଲୋକ କେତେ ଖର୍ଚ୍ଚ କରି କଷ୍ଟକରି ଧାଇଁ ଆସନ୍ତି । ସେ ନିଜେ ଗର୍ବ ଅନୁଭବ କରନ୍ତି—ଏମିତି ବାଲି ଆଉ ସମୁଦ୍ର ଆଉ ସେଇ ଲହଡ଼ି ଉପରେ ତାଙ୍କ ବଙ୍ଗଳା; ସବୁ ତାଙ୍କର ହାତ ମୁଠାରେ । ସେ ସ୍ତ୍ରୀଙ୍କ ଆଡ଼କୁ ଆଖି ପକାନ୍ତି । ବୁଢ଼ୀଆ ବାରନ୍ଦାରେ ରୁ' ରଖି ତାଙ୍କ ଆଡ଼କୁ ଆଗେଇ ଆସୁଥିଲା ତାଙ୍କୁ ଡ଼ାକିବାକୁ ।

ଫେରିବାକୁ ପାଦ ପକାଇବା ପୂର୍ବରୁ ହଠାତ୍ ତାଙ୍କର ଇଚ୍ଛାହେଲା ସେଇଠି ଆଉ ଟିକେ ଆଗେଇ ଯାଇ ପାଣିପାଖରେ ବାଲି ଉପରେ ଗଡ଼ ଗଡ଼ ଗୁ'ଟା ଖାଇଲେ କେମିତି ହୁଅନ୍ତା । ବଡ଼ଘରର ଝିଅ ବାହାହୋଇ ପୂର୍ବ ଓ ପଶ୍ଚିମ ଉପକୂଳର ସବୁ ସମୁଦ୍ର କୂଳକୁ ସୁଜାନାକୁ ନେଇ ବୁଲି ସାଇଚନ୍ତି । ଆଉ ସବୁ ବାଲିରେ ତାଙ୍କର ସେଇ ଗୋଟିଏ ସ୍ୱପ୍ନ—ସୁଜାନା ହୁଏତ ଏକ ପାଗଳାମି ବୋଲି କଥାଟାର ଗୁରୁତ୍ୱ ଦେବେ ନାହିଁ ; ହେଲେ ସ୍ୱପ୍ନ ଦେଖିବାରେ ବାଧା କଅଣ ? ଆଜି କିନ୍ତୁ ତାଙ୍କ ମନରେ ଏଇଟା ହୁଏତ ପାଗଳାମି ବୋଲି ମନେ ହେଲା ।

ସେ ପାଦ ପକାନ୍ତି ବାରଣ୍ଡା ଆଡ଼କୁ । ବୁଧିଆ ଗୃ ତିଆରି କରି କପଟା ବଢ଼ାଇ ଦିଏ ସାହେବଙ୍କ ହାତକୁ । ରଜତ ଗୃ'ଟା ହାତକୁ ନେଇ ଧୀରେ ଧୀରେ ସୁଜାନା ଦେବୀଙ୍କୁ ସେଇଟା ବଢ଼ାଇ ଦେଇ, ନିଜେ ଅନ୍ୟ କପରେ ମୁହଁ ଲଗାନ୍ତି । ଗୃ'ଖିଆ ଶେଷକରି ଶ୍ରୀମତୀ ଘର ଭିତରକୁ ଉଠି ଯାଆନ୍ତି ଜିନିଷପତ୍ର ଗୁଛାଗୁଛି କରିବାକୁ । ରଜତ ସେଇ କାଠ ବାଲ୍‌କୋନି ଉପରକୁ ଚେୟାର ଟାଣିନେଇ ସିଗାରେଟ୍ ଉଡାନ୍ତି, ସୁଜାନା ଦେବୀ ଧୂଆ ଧୋଇ ହୋଇ ବେଶପୋଷାକ ହୋଇ ବାହାରିବା ପର୍ଯ୍ୟନ୍ତ ।

ବେଶ ହୋଇ ବାହାରି ଆସୁ ଆସୁ ସବୁଦିନ ପରି ସେ ବ୍ୟସ୍ତ କରନ୍ତି ରଜତବାବୁଙ୍କୁ ; "ସେମିତି ବସି କଣ ଅନେଇଚ ? ଯାଅ ଚେଞ୍ଜ୍ କର— ଡିନାରକୁ ଯିବାନି ?" ରଜତବାବୁ ଉଠୁ ଉଠୁ ସେ ପୁଣି ଯୋଡ଼ିବାକୁ ଭୁଲନ୍ତିନି "ସୁଟ୍‌ଟା ବ୍ରଶ କରି ଟାଙ୍ଗି ଦେଇଚି ଖଟର ମଶାରି ବାଡରେ ।"

ରଜତବାବୁ ପାଇଜାମା ପଞ୍ଜାବି ବଦଳାଇ ସୁଟ୍‌ବୁଟ୍ ପିନ୍ଧି ସ୍ତ୍ରୀଙ୍କ ହାତକୁ ନିଜ ବାହୁସନ୍ଧିରେ ଧରି ଆଗେଇ ଯାଆନ୍ତି ପାନ୍ଥନିବାସର ବାର କମ୍ ଡାଇନିଂ ହଲକୁ । ସେଠି ସେଇ କଲିକତା ଅବା ଦୂରରୁ ଆସିଥିବା ଅତିଥିମାନଙ୍କ ଭିତରେ ସେମାନେ ଦୁଇଜଣ ବେଶ ଚିହ୍ନା ଅଚିହ୍ନାଙ୍କ ଭିତରେ ଅଧା ବନ୍ଧୁତା ଜମାଇ 'ବୁଫେ ଡିନାର' ଖାଉଖାଉ ରାତି ୧୧ଟା ବାଜେ, ଆଉ ଫେରିଆସି ଶୋଇପଡ଼ନ୍ତି ।

ଆଜି ଟିକେ ଫେରୁ ଫେରୁ ଡେରି ହୋଇଯାଇଚି । ସୁଜାନା ଦେବୀ ରୁମ୍ ଭିତରକୁ ପଶିଗଲେ । ସେ କିନ୍ତୁ ସିଗାରେଟଟା ଶେଷ କରିବାକୁ ବାରନ୍ଦା ଉପରେ ଠିଆ ହୋଇ ଗୃହିଁ ରହିଲେ ସମୁଦ୍ର ଆଡ଼କୁ । ଜହ୍ନ- ରାତିରେ ରୂପା ଚକ୍ ଚକ୍ ଗୃନ୍ଦପୁର ; ପାଦବୁଡ଼ା ପାଣି ଆଉ ଓଦା ବାଲି

ଉପରେ ସିଲହଟ୍ ସୃଷ୍ଟି କରି ବଙ୍ଗଳା ବାଡଧାରରେ ସେଇ ଗଛ ଗେଟ ପାଖରେ ବସିଥିଲେ ବୋଧହୁଏ ସକାଳର ସେଇ ଦୁଇଜଣ । ପାଣିର ଛଳ ଛଳ ସଙ୍ଗୀତ ଭିତରେ ସେ ଦୁଇଜଣଙ୍କ ହସର ତରଙ୍ଗ ତାଙ୍କ ମନରେ ସୃଷ୍ଟି କରୁଥିଲା ଏକ ପୁଲକ । ସିଗାରେଟଟା ଜଳ ଜଳ ଆଙ୍ଗୁଳି ଗରମ ଲାଗିଲା । ସେ ଗୃହିଁ ରହିଥିଲେ ସେଇ ଦୁଇଜଣଙ୍କୁ । ସିଗାରେଟ୍‌ଟା ଫିଙ୍ଗିଦେଇ ସେ ରୁମ୍ ଭିତରକୁ ଆଗେଇ ଗଲେ ।

ସକାଳେ ସୁଜାନା ସବୁ ଦିନେ ଡେରିରେ ଉଠନ୍ତି । 'ବିଉଟି ସ୍ଲିପ୍'ଟା ନହେଲେ ତାଙ୍କର ଚଳେନା । ଫରେଷ୍ଟ ଡିପାର୍ଟମେଣ୍ଟ ଷ୍ଟକିଷ୍ଟରେ ରଜତବାବୁଙ୍କୁ ଅବଶ୍ୟ ଲୋକବାକର ଅଭାବ କେବେ ପଡ଼ିନ । ଏଣୁ ସ୍ତ୍ରୀ ଡେରିରେ ଶୋଇବା ବା ଡେରିରେ ଉଠିବାରେ ବିଶେଷ କିଛି ଅସୁବିଧା ହୁଏନା । ପ୍ରଥମ ସକାଳର ସୁନେଲି ଆଲୁଅ ଝରକା ଦେଇ ବିଛଣା ଉପରେ ପଡ଼ିବା ଆଗରୁ ରଜତ ଉଠିପଡ଼ି ବାରଣ୍ଡାକୁ ବାହାରି ଆସିଥିଲେ । ବାରଣ୍ଡାରେ ଚେୟାରଟା ପୂର୍ବମୁଣ୍ଡକୁ ଟାଣିନେଇ ସେ ସମୁଦ୍ର ଭିତରେ ସୂର୍ଯ୍ୟୋଦୟକୁ ଉପଭୋଗ କରିବାକୁ ଚେଷ୍ଟା କରନ୍ତି, ବୁଧିଆ ଚା' ଆଣିବା ପର୍ଯ୍ୟନ୍ତ ।

ହଠାତ୍ ନଜରରେ ପଡ଼ିଲେ ସେଇ ଦମ୍ପତି । ପାଣି ପଛେଇ ଯାଇଥିଲା ବହୁତ ଦୂରକୁ । ଆଉ ଦୂରରୁ ଆଣୁଏ ପାଣିରୁ ହାତ ଧରାଧରି ହୋଇ ଧାଇଁ ଧାଇଁ ଆସି ପ୍ରତି ପଦକ୍ଷେପରେ ସହସ୍ର ସ୍ମୃତି ବିନ୍ଦୁ ଛୁଟି ଛୁଟି ସେମାନେ ଦୁଇଜଣ ଆସି ବଙ୍ଗଳାର ପଛପାଖରେ ଅଦୃଶ୍ୟ ହୋଇଗଲେ ।

ବୁଧିଆ ଚା' ନେଇଆସି ପାଖ ଟେବୁଲରେ ରଖିଲା । ସାହେବଙ୍କ ମୁହଁକୁ ଗୃହିଁ ବଙ୍ଗଳା ପଛପଟେ ଲୁଚି ଯାଉଥିବା ମଣିଷ ଦୁଇଟା ଆଡ଼କୁ

ଅନାଇ କହିଲା "ମୋ ପୁଅ ଆସିନି ସାର୍ ।" ସେ ଟିକିଏ ଡରି ଯାଇଥିଲା । କାକୁସ୍ଥ ହେବା ପରେ ପୁଣି କହିଲା "ଆଜି ତାର ଡ୍ୟୁଟି ନାହିଁ ।" ହଠାତ୍ ରଜତବାବୁଙ୍କ ମନେ ପଡ଼ିଲା ବୁଧିଆର ପୁଅକୁ ସେ ଏବେ ବଦଳି କରି ନର୍ସରି ଗାର୍ଡ଼େନର ଜଗୁଆଳି କରି ରଖିଛନ୍ତି ବାଲେଶ୍ୱରରେ ।

ଚା' ପିଉ ପିଉ ସେ ଝରକା ଦେଇ ଅନାଇଲେ, ସୁଜାନାଦେବୀ ବେଶ୍ ଆରାମରେ ଶୋଇ କଡ଼ ଲେଉଟାଉଥିଲେ । ସେ ଚା' କପ୍‌ଟା ରଖି ବୁଧିଆକୁ ଲଞ୍ଚର ଅର୍ଡର ଦେଉ ଦେଉ ଆଉ ଗୋଟେ ସିଗାରେଟ୍ ଲଗାଇଲେ । ପଛଗେଟ୍ ପାଖରୁ ହସଟା ପୁଣି ଆସି ତାଙ୍କ କାନରେ ବାଜୁଥିଲା । ଏଥର କେମିତି ଶ୍ରୁତିକଟୁ ବୋଧ ହେଲା ତାଙ୍କୁ ସେଇ ହସ ।



# ନିଶା

କ୍ଷାନ୍ତଦେବୀ ଗାଡ଼ିରୁ ଓହ୍ଲାଇ ଗେଟ୍ ଖୋଲିଲେ । ସବୁଦିନ ପରି ଚାକର ପିଲାଟା ଧାଇଁଆସି ଗେଟ୍ ନ ଖୋଲିବାରୁ ତାଙ୍କ ମନରେ ହଠାତ୍ ଚମକ ଲାଗିଲା । କିଛି ଅଘଟଣ ଘଟିନିତ ! ଗାଡ଼ିର ସହଗାମୀମାନଙ୍କ ବିଦାୟସୂଚକ ସମ୍ବୋଧନକୁ କାନ ନଦେଇ ସେ ବ୍ୟସ୍ତ ହୋଇ ଆଗେଇ ଗଲେ—ବାରଣ୍ଡାରେ ଉଠିବା ବେଳକୁ ମଦନା କବାଟ ଖୋଲିଲା—

କଣ ହୋଇଛି କିରେ ଆଜି— ?

କଥାରେ ବାଧା ଦେଇ ମଦନା କହିଲା 'ମୁଁ ଭିତର ଘରେ ଶୋଇଥିଲି, ରାତିରୁ ବାବୁଙ୍କୁ ଜ୍ୱର ।'

'ଏଁ !' ଚମକି ପଡ଼ିଲେ କ୍ଷାନ୍ତଦେବୀ । 'ଖରାବେଳୁ ମନଟା ଛକଛକ ହେଉଛି—ଆଖିଟା ଡେଇଁଛି—ଜମା ଭଲ ଲକ୍ଷଣ ନ; ଏଇ ଦେଖ ଅଘଟଣ' ଭାବୁ ଭାବୁ ସେ ଧାଇଁଗଲେ ଭିତର ଘରକୁ ।

ପାଞ୍ଚଦିନ ପରେ ସେ ଫେରୁଛନ୍ତି ଇଲେକ୍‌ସନ ମିଟିଂ ସାରି । ଦେହରେ ଗସ୍ତା, ଗାଁମାଟିର ଧୂଳି—ସାରା ଅଙ୍ଗରେ ଜିପ୍ ଗାଡ଼ିର ହଲଚଲ

ସବୁ ତାଙ୍କ ମନରୁ ଅପସର ଯାଇଥିଲା ।  ଅଗେଇ ଯାଇ ସିଧା ଧାଇଁଗଲେ ଶୋଇବା ଘରକୁ ।  କାନ୍ଧରୁ ବେଗଟା ଫିଙ୍ଗିଦେଇ କପାଳ ଓ ବେକରେ ହାତଦେଇ କହିଉଠିଲେ 'ମୋତେ ମରଣ ହେଉ—ଇଲେକ୍‌ସନକୁ ଧିକ୍-ମୋତେ ଧିକ୍ ।'

ବଦାନ୍ତ ସାମାନ୍ୟ ହସି କହିଲେ "ଏମିତ କାହିଁକି ହେଉଚ, ଅଣ୍ଡାଜ୍ଵର । କାଲି ଓପରଓଳ କେମିତ ଦେହଟା କସମସ୍ ରକମ ଲାଗିଲା । ହିନ ଗୋଟେ ହଟାରେ ଗୁଡ଼ ଯିବନ !"

ଶାନ୍ତିଦେବୀଙ୍କ ଆଖିରୁ ଲୁହ ବୋହିବା ଆରମ୍ଭ ହୋଇ ଯାଇଥିଲା । ଖଟରେ ବସି ମୁଣ୍ଡ ଚପିବା ଆରମ୍ଭ କରି ଦେଇଥିଲେ ସେ ।

ନଇଁପଡ଼ି କପାଳ ଉପରେ ଚୁମାଟେ ଖାଇବା ବେଳକୁ ବଦାନ୍ତ ଟାଣି ଧରିଲେ ଗୁଡ ଉପରେ ।

ବୟସରେ ୨।୩ଟା ବର୍ଷର ପାର୍ଥକ୍ୟ । କଲେଜ ୟୁନିୟନ ଇଲେକ୍‌ସନରେ ବାଗ୍ମୀ ଦୁଇଜଣ, ସଭାପତି ପଦ ପାଇଁ ଲଢ଼ୁ ଲଢ଼ୁ ଆକୃଷ୍ଟ ହୋଇଥିଲେ ପରସ୍ପର । ତାପରେ ବିବାହ ଓ ବଦାନ୍ତଙ୍କ ନାମକୁ ମିଳେଇବା ପାଇଁ ଶାନ୍ତିକୁ ଶାନ୍ତ କରିଥିଲେ ସେ ।  ବଦାନ୍ତ କିନ୍ତୁ ସରକାରୀ ଚାକିରିରେ ଯୋଗଦେଇ ରାଜନୀତିରୁ ଦୂରରେ ରହିଲେ ବି ଶାନ୍ତିଦେବୀଙ୍କୁ ସେ କୌଣସି ପ୍ରକାର ବାଧା ଦେଇନାହାନ୍ତି ।  ତାଙ୍କ ନିଜର ଇଚ୍ଛାନୁଯାୟୀ ସେ ଯେଉଁଠି ଯେଉଁ ପ୍ରକାର କାମରେ ହାତ ଦେବାକୁ ଚେଷ୍ଟା କରିଚନ୍ତି ବଦାନ୍ତ ସବୁଥିରେ ଅକୁଣ୍ଠ ସାହାଯ୍ୟ କରି ଆସିଚନ୍ତି ତାଙ୍କର ।

ମଇଳା ଲୁଗା ବଦଳାଇବାକୁ ଜବରଦସ୍ତ ବଦାନ୍ତ ଠେଲିଲେ ଶାନ୍ତିଦେବୀଙ୍କୁ, ସ୍ଵାମୀଙ୍କ ପାଖ ଗୁଡ଼ ବହୁ କଷ୍ଟରେ ସେ ଉଠି ଗାଧୁଆ ଘରେ

ଧୂଆଁଧୋଇ ହୋଇ ଲୁଗା ବଦଳାଇ ଆସିବା ବେଳକୁ ପୁଣି ଆଉଥରେ ଆଖିରେ ଲୁହ । ଏତେଦିନ ଧରି ସେ ଦିନ ରାତି କଟାଇ ଆସିଚନ୍ତି ବିଭିନ୍ନ ପ୍ରକାର ସୋସିଆଲ ୱାର୍କ ବା କେତେବେଳେ ରାଜନୀତିଜ୍ଞଙ୍କ ସହ ମିଶି ମିଟିଂ ଇତ୍ୟାଦିରେ, କିନ୍ତୁ କେବେ ଏମିତି ଫେରିବା ବେଳକୁ ବିକ୍ରାନ୍ତ ଜ୍ୱର ନେଇ ବିଛଣାରେ ପଡ଼ି ନଥିଲେ । ପ୍ରାୟ ସବୁଦିନେ ସେଇ ଗୋଟିଏ ଦୃଶ୍ୟ ତାଙ୍କୁ ମୁଗ୍ଧ କରିଚି, ପ୍ରେରଣା ଦେଇଚି—ଗାଡ଼ି ଲାଗୁ ନଲାଗୁ ଦୂରରୁ ଲାଇଟ ଦେଖି ମଦନା ଗେଟ୍ ଖୋଲିଲା ବେଳକୁ ବିକ୍ରାନ୍ତ ଦାଣ୍ଡପିଣ୍ଡାରେ ତାଙ୍କର ସ୍ୱାଗତିକା ସୂଚକ ହସ ନେଇ ଛିଡ଼ା । ଆଜି ତାର ବ୍ୟତିକ୍ରମ କ୍ରାନ୍ତିଦେବୀଙ୍କ ମନରେ ଦାରୁଣ ଆଘାତ ଦେଇଚି । ସେ ଆଖିଲୁହ ସମ୍ବରଣ କରିପାରୁ ନଥିଲେ ।

ବିକ୍ରାନ୍ତ ତକିଆରେ ଭରିଦେଇ ପଲଙ୍କ ବାଡ଼ାରେ ଡେରି ହୋଇ ବସିଥିଲେ । ସ୍ତ୍ରୀଙ୍କୁ କାନ୍ଦିବାର ଦେଖି ପୁଣି ଟାଣିନେଇ ଖଟରେ ବସାଇ ଛାତି ଉପରକୁ ଆଉଜାଇ ନେଇ ଲୁହ ପୋଛି ଦେଉ ଦେଉ କହିଲେ, 'ଖାଇଚ' ? ଭିଜା ଆଖିରେ ସମ୍ମତି ସୂଚକ ମୁଣ୍ଡ ହଲାଇ ତକିଆକୁ ତଳକୁ ଖସାଇ ଦେଇ ବିକ୍ରାନ୍ତଙ୍କୁ ଜୋର୍ କରି ଶୁଆଇ ଦେଲେ କ୍ରାନ୍ତିଦେବୀ ।

ତାଙ୍କର ସବୁ କ୍ଲାନ୍ତି ଦୂର ହୋଇ ଯାଇଥିଲା ସ୍ୱାମୀଙ୍କ ଜ୍ୱର ଦେଖି । ବେଶ୍ ଗରମ ଥିଲା କପାଳ, ୧୦୨ ଡିଗ୍ରୀରୁ ବେଶି ହେବ । ଭିକ୍ସ ନେଇ ନାକ, କପାଳ, ଛାତିରେ ମାରୁ ମାରୁ ବିକ୍ରାନ୍ତ ପୁଣି ଟାଣି ଧରି ବାହୁ-ବେଷ୍ଟନୀରେ ଭିଡ଼ି ଧରିଲେ ସ୍ତ୍ରୀଙ୍କୁ ।

ବୟସର ତାରତମ୍ୟ କମ୍ ଦୃଷ୍ଟିରୁ ବିକ୍ରାନ୍ତଙ୍କ ଦାବିକୁ ଶାରୀରିକ, ମାନସିକ କ୍ଲାନ୍ତିର ଦୋହାଇ ଦେଇ ବିମୁଖ କରିବାକୁ ପଡ଼େ କ୍ରାନ୍ତିଦେବୀଙ୍କୁ ବହୁବାର । ଅବଶ୍ୟ ବିକ୍ରାନ୍ତଙ୍କର ଏଥିପାଇଁ କିଛି କ୍ଷୋଭ ନାହିଁ କି ସେ

କେବେ ଅଭାବ ମଧ୍ୟ ଉପଲବ୍‌ଧି କରିନାହାନ୍ତି । ଏକ ଐଶ୍ୱରିକ ସ୍ନେହ ଓ ପ୍ରେମରେ ବନ୍ଧା ଜୀବନ ଦୁଇଟାର ସମ୍ପର୍କରେ ଶରୀରର ଦାବି ଆଦାନପ୍ରଦାନ ଏକ ସାମାନ୍ୟତମ ଘଟଣା । ଆଜି କିନ୍ତୁ କ୍ରାନ୍ତିଦେବୀଙ୍କର ଶାରୀରିକ ବା ମାନସିକ କ୍ଲାନ୍ତି ନଥିଲା । ସ୍ୱାମୀଙ୍କ ଅନ୍ତରର ସାମାନ୍ୟ ଅଭାବ ସେ ଅନୁଭବ କରିଚନ୍ତି ପ୍ରତି ଲୋମକୂପରେ । ଏଣୁ ଆଜି ଥକି ଯାଇଥିଲେ ମଧ୍ୟ ସେ ଅନୁଭବ କଲେ ପ୍ରତିଦାନର ଉଷ୍ମତା, ଆଉ ପରସ୍ପର ପରିପୂରକ ସୁଖାନୁ-ଭୂତିର କ୍ଲାନ୍ତିରେ ଶୋଇ ଯାଇଥିଲେ ଉଭୟ ।

ଅଧରାତିରେ, କ୍ଲାନ୍ତିର ପ୍ରଥମ ଉପଶମ ପରେ ପରେ କ୍ଷାନ୍ତିଦେବୀ ଉଠି ଧୀରେ ଧୀରେ ଥର୍ମୋମିଟର ଦେଇ ଜ୍ୱର ପୁଣି ଦେଖିଲେ—'ନା କମିଯାଇଚି' । ତଥାପି ଡ଼ାକ୍ତରଙ୍କ ପ୍ରେସ୍‌କ୍ରିପ୍‌ସନ୍ ଅନୁଯାୟୀ ୧୨ଟାରେ ଔଷଧ ଖାଇବାକଥା, ଅଧଘଣ୍ଟାଏ ଡେ଼ରି ହୋଇଯାଇଚି । ଔଷଧଟା ଖୁଆଇ ପାଣିଗିଲାସଟା ରଖୁରଖୁ ମୁଣ୍ଡରେ ହାତ ବୁଲାଇଥିଲେ ସେ । ମୁଣ୍ଡଚିପି ଦେବାକୁ ଆରମ୍ଭ କଲାବେଳକୁ ବହ୍ନିକାନ୍ତ ମନାକଲେ 'ନା ମୁଣ୍ଡବିନ୍ଧୁନି' । କ୍ଷାନ୍ତିଦେବୀ ଗୁଦରିଟା ସଜାଇ ଦେଇ ବୁଲିଗଲେ ଓ ଗୋଡ଼ ଘଷିବା ଆରମ୍ଭ କଲେ ପୁଣି । ବହ୍ନିକାନ୍ତ ଜାଣନ୍ତି ସେ ଜମା ଛାଡ଼ି-ବେନି, ଏଣୁ ବାଧହୋଇ ୨/୪ ମିନିଟ୍ ପଡ଼ିରହିଲେ । ତା'ପରେ ଉଠି ତାଙ୍କୁ ଧରି ଟାଣିଆଣି ପାଖରେ ଶୁଆଇଦେଲେ । 'ଶୋଇପଡ଼, ତୁମକୁ ରେଷ୍ଟ ଦରକାର ।'

ଭୋର ୪ଟାରୁ ଉଠି କ୍ଷାନ୍ତିଦେବୀ ପୂଜାକାମ ସାରିଦେଲେ । ଘରେ ଥିଲେ ବିଛଣାରେ ଚାଟା ଆଣିଦେବା ତାଙ୍କର ନିଜସ୍ୱ—ସେ ନଥିଲେ ବହ୍ନିକାନ୍ତ ବିଛଣାରେ ଚା ପିଅନ୍ତି ନାହିଁ । ଚା' ପରେ, ପୁଣି ଥର୍ମୋମିଟର ଦେଇ ଜ୍ୱର ଦେଖିନେଲେ—"କମିଯାଇଚି, ନର୍ମାଲ୍ ଯଦିଚ ହୋଇନି ।"

ଜଳଖିଆ ତିଆରି କରୁକରୁ ବଜାର କଣ ଆସିବ ଔଷଧ କଣ କେତେବେଳେ ଦିଆଯିବ, ମଦନାକୁ ବୁଝାଇଦେଇ ଠିକ୍ ୭ଟାବେଳକୁ ସ୍ୱାମୀଙ୍କ ପାଇଁ ଔଷଧ ଧରି ପହଞ୍ଚିଗଲେ। ପ୍ରଶାନ୍ତ ସେତେବେଳକୁ ଗାଧୁଆଘର କାମସାରି ଶାନ୍ତିଦେବୀଙ୍କ ବେଗ୍‌ଟା ସଜାଇ ରଖୁଥିଲେ। ଦୁଇଟା ଶାଢ଼ୀଶାୟା ଭିତରେ ଦୁଇଖଣ୍ଡ ବହି ବାଛି ସଜାଡ଼ି ଥିଲେ ସେ। ଶାନ୍ତିଦେବୀ ଔଷଧ ଖୁଆଉ ଖୁଆଉ ଶାସନସୂଚକ ଗଳାରେ କହିଉଠିଲେ 'ତୁମକୁ ସେସବୁ କରିବାକୁ କିଏ କହୁଛି ?' ସବୁଦିନେ କିନ୍ତୁ ପ୍ରଶାନ୍ତ ତାଙ୍କ ବେଗ୍‌ର ଜିନିଷ ଚେକ୍‌କରି ରଖି ଦିଅନ୍ତି, କଣ ଅଛି ନ ଅଛି। ଭିତରେ ଭିତରେ ଶାନ୍ତିଦେବୀ ଗର୍ବ ଅନୁଭବ କଲେ ସ୍ୱାମୀଙ୍କ ପାଇଁ। ଜଳଖିଆ ଟେବୁଲ୍‌ରେ ପୁଣି ମଦନାକୁ ଆଉଥରେ ସବୁ ବୁଝାଇବା-ବେଳକୁ ଦାଣ୍ଡରେ ଗାଡ଼ି ଶବ୍ଦ ହେଲା।

ତରତରରେ ଖାଇଦେଇ ପାଣିପିଇ, ଆଗେଇ ଆସି ଚାରିଆଡ଼କୁ ଚାହିଁ ସ୍ୱାମୀଙ୍କ ଓଠରେ ଓଠ ଥାପିଦେଇ, କହିଲେ 'ତମେ ଆଜି ଅଫିସ ଯିବନି—ପୁରା ରେଷ୍ଟ।'

ପ୍ରଶାନ୍ତ ହସିଲେ।

ଶାନ୍ତିଦେବୀ—'ଆସୁଛି' କହି ତରତରରେ ଚପଲ୍‌ଟା ଗଳାଇ ବାହାରିଗଲେ, ଦାଣ୍ଡଦୁଆରେ ଇଲେକସନ୍ ଗାଡ଼ି ଅପେକ୍ଷା କରିଥିଲା।



# ବିସ୍ମୃତିର ସ୍ମୃତି

ପ୍ରତାପରୁଦ୍ର ଗାଡ଼ିରୁ ଓହ୍ଲାଇ ସବୁଦିନପରି ସିଧା ବଗିଚା ଆଡ଼କୁ ଯାଇ ନଥିଲେ ସେଦିନ । ପ୍ରାୟ ଅଫିସ ଫେରନ୍ତାବେଳକୁ (ଯଉଁଦିନ ଅବଶ୍ୟ ଟୁର୍‌ରେ ବାହାରକୁ ନ ଯାଇ ଥାଆନ୍ତି) ଡାହାଣପାଖ ଲନ୍ ଡେଇଁ ଫୁଲ ଆଡ଼କୁ, ଗୁଆ ଆଉ ନଡ଼ିଆଗଛ ଭିତରେ ଗାର୍ଡ଼େନ୍-ଅମ୍ବ୍ରେଲା ତଳେ ସିଧାଯାଇ ପହଞ୍ଚିଯାଆନ୍ତି, ଯେଉଁଠି ଖଣ୍ଡେ ଗାର୍ଡ଼େନ ଚେୟାରରେ ଶ୍ରୀମତୀ ଅନୁରାଧା ବସି ମାଛଗୁଡ଼ାକୁ କଣଟିକେ ଖାଇବାକୁ ଦେଉଁ ଦେଉଁ ବସି ରେଡ଼ିଓ ବା କ୍ୟାସେଟ୍ ଶୁଣୁଥାଆନ୍ତି । ପ୍ରତାପରୁଦ୍ରଙ୍କ ଏମିତି ସିଧା ଭିତରକୁ ଚାଲିଯିବା, ଅନୁରାଧା ଅନୁମାନକଲେ ନିଶ୍ଚୟ କିଛି ଗୋଟେ ଘଟିଛି । ଅଫିସର ଯେତେକିଛି ସୁବିଧା ଅସୁବିଧା ଇମର୍ଜେନ୍‌ସିରେ ପ୍ରତାପରୁଦ୍ରଙ୍କୁ ସାଧାରଣତଃ କୌଣସି ପ୍ରକାର ବ୍ୟସ୍ତତାରେ ପକାଏ ନାହିଁ । ଏଣୁ ଆଜ ଅନୁରାଧା ଅନୁମାନ କଲେ ନିଶ୍ଚୟ କିଛି ଅହେତୁକ ଘଟିଛି ।

ବହୁଦିନ ଓଡ଼ିଶାରେ ରହିବାପରେ ନିହାତି ବେଶି ହେଲେ ଦିଲ୍ଲୀ ଥରେ ଯିବାକୁ ପଡ଼ିଥିଲା, କିନ୍ତୁ ଚେଷ୍ଟାକରି ଦୁଇବର୍ଷ ଭିତରେ ସେ ପୁଣି ଓଡ଼ିଶାକୁ ଫେରି ଯାଇଥିଲେ । ଏତେବର୍ଷ ଓଡିଶାରେ ରହିବା ପରେ

ଆଜି ବିହାରର ଗୃକଣ୍ଟ ଜାଗା ଭଲ ଲାଗୁନି । ପ୍ରଥମେ ତ ଡେପୁଟେସନ ଗୃକଣ୍ଟରେ ନାନାପ୍ରକାର ଅସୁବିଧା, ତା ସାଙ୍ଗକୁ ଏପାଖ ଗୁଡ଼ାକରେ ଏମିତି ଡାର୍ଟି ଟ୍ରେଡ୍ ୟୁନିୟୁନିଜମ୍ ହେଲାଣି—ପଲିଟିକାଲ ଇଣ୍ଟାରଫିୟାରେନ୍ସ ମଧ୍ୟରେ । ତା ସାଙ୍ଗକୁ ଭାଓଲେନ୍ସ ଏଇ ଇଣ୍ଡଷ୍ଟ୍ରିଆଲ ଜୋନ୍-ଗୁଡ଼ାକରେ ଏକ ନିତିଦିନିଆ ଘଟଣା—ସେଥିରେ ପୁଣି ବିହାରର କୋଲ ବେଲ୍ଟରେ ରେଲୱେ ପୋଲିସ ଗୃକଣ୍ଟ—ଗୋଟେ କିଛି ପାପର ପ୍ରାୟଶ୍ଚିତ ବୋଲି ସବୁବେଳେ କହନ୍ତି ଅନୁରାଧା । ପ୍ରତାପରୁଦ୍ର ବାଧାଦେଇ କହନ୍ତି—"ଇଏ ଏକ ଚ୍ୟାଲେଞ୍ଜ୍ । ଏଣୁ ଏଇଟା ମୋ ପକ୍ଷରେ କିଛି ବଡ଼ କଥା ନୁହେଁ ।"

ଅନ୍ୟ ଷ୍ଟେଟ୍‌ରେ ପ୍ରତାପରୁଦ୍ରଙ୍କ ବ୍ୟାଚର ଆଇ: ପି: ଏସ୍ ଅଫିସର ସବୁ ଡି: ଆଇ: ଜି: ହେଲେଣି । ଏଣୁ ଡେପୁଟେସନ୍‌ରେ ଏସ୍: ପି: ପୋଷ୍ଟରେ ଆସିବାକୁ ପ୍ରାପ୍ୟ ସମୟରେ ଏଭଏଡ୍ କରିବାରୁ—ତା ସାଙ୍ଗକୁ ବର୍ତ୍ତମାନ ପଲିଟିକାଲ ସିଚୁଏସନ୍ ତାଙ୍କୁ ନ ସୁହାଇବାରୁ ସେ ବାଧ୍ୟ ହୋଇ ଏଇ ରେଲୱେ ପୋଲିସକୁ ବାଛି ନେଇଥିଲେ କେତେଟା ବର୍ଷପାଇଁ ।

ଅନୁରାଧା ଉଠିଲେ । ଘର ଭିତରକୁ ଆସି ପୂଜାଙ୍କୁ ପଛ ବାରନ୍ଦାକୁ ଚା ଆଣିବାକୁ କହି ସେ ଶୋଇବା ଘରକୁ ପଶିଗଲେ । ପ୍ରତାପରୁଦ୍ର ଡ୍ରେସ ଖୋଲି ବାଥ୍‌ରୁମ୍‌ରେ ମୁହଁ ଧୋଇ ଟାଉଏଲ୍‌ଟା ଧରି ଦର୍ପଣ ସାମ୍ନାରେ ଛିଡ଼ା ହୋଇ ହାତ ପୋଛୁଥିଲେ ଏବଂ ନିଜକୁ ଦେଖୁଥିଲେ । ଅନୁରାଧା ଅନୁମାନ କଲେ ବହୁ ବେଳରୁ ଶୁଖିଲ୍ ହାତଟା ଖାଲି ପୋଛି ହେଉଛି, କିନ୍ତୁ ନିବିଷ୍ଟ ମନରେ ସେ ନିଜକୁ ଦେଖୁଚନ୍ତି, ଅନୁରାଧା ଆଶ୍ଚର୍ଯ୍ୟ ହେଲେ ।

"କଣ ଏମିତି ନିଜକୁ ଦେଖୁଚ ?" ପ୍ରତାପରୁଦ୍ର ବୁଲିପଡ଼ି ସ୍ତ୍ରୀ ମୁହଁକୁ ଚାହିଁଲେ । ବାରଣ୍ଡାକୁ ବାହାରି ବେତଚେୟାରଟା ଉପରେ

ବସୁ ବସୁ କହିଲେ "ଆଜି କାହାସହି ଦେଖା ହେଲା ଜାଣିଚ ?" ଭାରି ଗମ୍ଭୀର ଓ ସିରିଆସ ଗଳାରେ କହି ସେ ନିଜ ନଖକୁ ଚାହିଁଥିଲେ, ସତେ ଯେପରି ନଖଦର୍ପଣରେ ତାକୁ ସେ ଦେଖିପାରୁଚନ୍ତି ।

ସତରେ ଅନୁରାଧା ଅନୁମାନ କଲେ ଏଇ ମଣିଷଟା ମନରେ କେବେ କିଛି ଗ୍ଲାନି ନାହିଁ । ବିବାହ ପୂର୍ବରୁ ଅଙ୍କିତଟା ସେ ପୃଷ୍ଠା ପୃଷ୍ଠା କରି ସବୁ ଖୋଲି ଦେଇଥିଲେ ଅନୁରାଧା ସାମ୍ନାରେ, ଆଉ ବିବାହ ପରର ପ୍ରତ୍ୟେକ ପୃଷ୍ଠା ସହି ଅତି ଘନିଷ୍ଠଭାବରେ ସଂଶ୍ଳିଷ୍ଟ ଅନୁରାଧା । ସରକାରି ବେସରକାରି ଏମିତି କିଛି ଗୋଟେ ବଡ଼ ଘଟଣା ନାହିଁ ଯାହା ଅନୁରାଧାଙ୍କ ପାଖରେ ସେ ନକହନ୍ତି । ଏଇଟା ପ୍ରତ୍ୟେକ ଦିନର ଡ଼ାଏରି ଲେଖା ପରି ପ୍ରତାପରୁଦ୍ରଙ୍କ ଡ଼ାଏରି ଲେଖା । ସେ ମନେ ମନେ ବ୍ୟସ୍ତ ହେଲେ "ଆଜି ପ୍ରତାପରୁଦ୍ର କାହାକୁବା ଦେଖିଲେ !" ବିଶେଷତଃ ଆଜିକାର ମୁଡ୍ ଓ ଆସିବା ଦିନଠୁ କାହା ସହି ଦେଖା ନେଇ ହଠାତ୍ ଏପରି କହିବାର ତାତ୍ପର୍ଯ୍ୟ, ସେ ନିଜେ ବ୍ୟସ୍ତ ହୋଇ ଉଠିଲେ । ଚିନ୍ତାକରିନେଲେ, ବିହାର ରକମ ରାଜ୍ୟରେ କାହାସହି ବା ଦେଖାହୋଇ ଏମିତି ଚିନ୍ତାକ୍ଲିଷ୍ଟ ହୋଇ ପାରନ୍ତି, ପଚାରିଲେ ଉତ୍ସୁକା ହୋଇ—"ମୃଣାଲ ଦାସ ସଙ୍ଗେ ଦେଖା ହେଲା କି ?"

ଚମକି ପଡ଼ିବାପରି ପ୍ରତାପରୁଦ୍ର ସିଧାହୋଇ ବସି ପଡ଼ିଲେ । ସାମାନ୍ୟ ହସି କହିଲେ "ହିଁ ତମେ ସତରେ ଜଣେ ଜିନିଆସ୍ ।''

ଟିକି ତାକୁ ତାକୁ ଅନୁରାଧା କହିଲେ ''ତମ ନଖଦର୍ପଣରେ ଯେତେ ସବୁ ମଣିଷ ଦେଖିପାରୁଥିବ ତାଙ୍କ ଭିତରେ ଯଦି ତମ ମନରେ କେହି 'ଝଡ଼' ସୃଷ୍ଟି କରିପାରେ, ସେ ତମର ଏଇ ବାଲ୍ୟବନ୍ଧୁ 'ମୃଣାଲ ଦାସ' । ଏଣୁ ଆଜି ତମର ସବୁ ବ୍ୟତିକ୍ରମ ସହି ମନର ଗାମ୍ଭୀର୍ଯ୍ୟ ଦେଖି ମୁଁ ଅନୁମାନ କଲି କେହି ଜଣେ, 'ପୁରୁଣା ଘା' ତମର ଖୋଲି ଦେଇଚି ।

ଟିକେ ରହି କହିଲେ "ଆଉ ମୁଁ ଜାଣିବାରେ ତମ ମନରେ ସେଇ ଗୋଟିଏ ମାତ୍ର ଘା ।" ସେ ପିଜ ପିଜ ହୋଇଲେ "ମୁଁ ବହୁ ଦିନରୁ ଅନୁମାନ କରୁଥିଲି ଏଇ ଧାନବାଦ ଏରିଆରୁ ତାଙ୍କ ଶେଷ ଚିଠି ଥିଲା, ଏଣୁ ହଠାତ୍ ହୁଏତ ତା ସହ ତମର ଦେଖା ହେବ ।"

ପ୍ରତାପରୁଦ୍ର ମଧ୍ୟ ସେଇ ଭୟ କରୁଥିଲେ । ନିଶ୍ଚୟ ଏଇ ଏରିଆରେ ତା ସହ ଦେଖାହେବ, କାରଣ ତାର ସେଇ ଶେଷ ଚିଠି ସେ ଧାନବାଦରୁ ହିଁ ଲେଖିଥିଲା । ଏଣୁ ସେ ଧାନବାଦ ଆସିବା ପୂର୍ବରୁ ସାମାନ୍ୟ ଦ୍ୱିଧାବୋଧ କରୁଥିଲେ । ବାହାର ବେପରୁଆ ଭାବ ସବୁ ଦ୍ୱିଧାକୁ ତାଙ୍କର ଢାଙ୍କି ରଖିଥିଲା । ଏପରିକି ଅନୁରାଧାଙ୍କୁ ମନର ଏଇ ଦ୍ୱିଧା ସେ ଖୋଲି କେବେ କହି ନଥିଲେ । "ଦେଖା ହେଲେ ହେବ । କ୍ଷତି କଣ ? ବରଂ ସବୁ ଖୋଲାଖୋଲି ସାଫ୍ ହୋଇଯିବ"—ଏଇଥିଲା ତାଙ୍କ ଉଦ୍ଦେଶ୍ୟ ।

ଅନୁରାଧା ବର୍ତ୍ତମାନ ସବୁ ଶୁଣି କହିଲେ "ବେଶ୍ ହେଲା ; ସବୁ ସାଫ୍ କରି ଦେଲନି । ବରଂ ତାଙ୍କୁ ଘରକୁ ନେଇ ଆସିଲନି—ଆମେ ସାଙ୍ଗ ହୋଇ···

ବାଧା ଦେଇ ପ୍ରତାପରୁଦ୍ର କହିଲେ "ସେ ବର୍ତ୍ତମାନ ପୋଲିସ ଲକ୍-ଅପ୍‌ରେ ।" ଏତିକି କହି ନୀରବ ରହିଲେ ସେ । ଅନୁରାଧା ମଧ୍ୟ ହଠାତ୍ ଏ ପ୍ରକାର ପରିସ୍ଥିତିରେ ଚୁପ୍ ହୋଇଗଲେ । କଣ ହୋଇ ଥାଇପାରେ । ଏଣ୍ଟିସୋସିଆଲ ଏକ୍ଟିଭିଟି, ନା ଟ୍ରେଡ୍ ୟୁନିୟନ ଗୁଣ୍ଡାଗିରି !

ପ୍ରତାପରୁଦ୍ର କହିଲେ "କିଛି ମାସହେଲା କୋଇଲା ସ୍ମଗ୍‌ଲିଂ ଗ୍ରୁପ୍ ବେଶ୍ ଦବି ଯାଇଥିଲେ । କିନ୍ତୁ ତମକୁ ସେଦିନ କହୁଥିଲି, ତାଙ୍କ ଗ୍ରୁପ୍ ଏବେ ଜୋର ସୋରରେ ଆଗେଇଛି । ତିନଚାରି ଦିନରେ ଦୁଇଦୁଇଟା ମର୍ଡ଼ର ;

ଅବଶ୍ୟ ମୋର ଜୁରିସଡ଼ିକ୍ସନ୍‌ରେ ନୁହେଁ, କିନ୍ତୁ ଯେତେବେଳେ ବି କୋଇଲା ବ୍ୟାପାରଟା ଯେ ଦିନେ ନା ଦିନେ ମୋ ରେଲ୍‌ୱେ ଜୁରିସ୍‌ଡ଼ିକ୍‌ସନ୍‌କୁ ଆସିବ, ମୁଁ ନିଃସନ୍ଦେହ ଥିଲି ।”

ଅନୁରାଧା ବ୍ୟସ୍ତ ହୋଇ କହିଲେ “ତମ ମ୍ରିନାଲ୍ ଦାସ କଣ ସ୍ୱାଭିତରେ ପୁରା ଏଣ୍ଟିସୋସିଆଲ ପାଲଟି ଯାଇଛି ?

ହଁ ଅନୁରାଧା, ପୁରା ହାର୍ଡ଼କୋର ଏଣ୍ଟିସୋସିଆଲ । ଖାଲି ସେତିକି ନୁହେଁ ସେ ବୋଧହୁଏ ଉଙ୍କାହୋଇ ଆସିଛି ‘ହିଟ୍‌ମ୍ୟାନ୍’ ହିସାବରେ— ମାନେ ‘ସର୍ଦ୍ଦା’ର ଯାହାକୁ କହନ୍ତି ।

“କିନ୍ତୁ ସେ ପରା ମାଇଚିଆ ରକମ ଥିଲିବୋଲି କହୁଥିଲ” ବାଧାଦେଇ ପ୍ରତାପରୁଦ୍ର କହିଲେ “ସେଇ ମାଇଚିଆ ମ୍ରିନାଲ୍ ଦାସକୁ ଆଜି ଦେଖି ମୁଁ ବିଶ୍ୱାସ କରିପାରିଲିନି ଏଇ ଅବସ୍ଥାରେ ।”

ଟିକିଏ ହସି ପୁଣି କହିଲେ ପ୍ରାୟ ନିଜକୁ ନିଜେ କହିବା ଭଳି, “ମ୍ରିନାଲ୍‌କୁ ଏଇ ବାଟରେ ଠେଲିଦେବାରେ ମୁଁ ବୋଧହୁଏ ଦୋଷୀ ।”

ଅନୁରାଧା ଚୁପ୍ ରହିଲେ । ଘା’ଟା ଠିକ୍ ଆଜି ପୂଜରକ୍ତ ନେଇ ପ୍ରତାପରୁଦ୍ରଙ୍କୁ କଷ୍ଟଦେବା ଆରମ୍ଭ କରିଛି । ପୁରୁଣା କଲେଜଜୀବନର ସବୁ ବନ୍ଧୁଙ୍କର କଲେଜ ଇତିହାସ ମଧ୍ୟରୁ ମ୍ରିନାଲ ଦାସର ଅନ୍ୟ ପ୍ରକାର ଥିଲା । ବିଶେଷ ବନ୍ଧୁତ୍ୱ ଜମି ଉଠୁଥିବା ସମୟରେ ହଠାତ୍ ମ୍ରିନାଲ ଦାସର ବାପାଙ୍କର ମୃତ୍ୟୁ ନେଇ ମ୍ରିନାଲ୍‌କୁ କଲେଜ ଦଣ୍ଡା ନ ସରୁଣୁ ଛାଡ଼ିବାକୁ ପଡ଼େ କଟକ, ଆଜି ଛାଡ଼ିବାକୁ ପଡ଼େ “ରେବା”ର ସାନ୍ନିଧ୍ୟ । ରେବା ସହ ପରିଚୟ ଠାରୁ ଘନିଷ୍ଠତା ପର୍ଯ୍ୟନ୍ତ ପ୍ରତ୍ୟେକ ଦିନର ଘଟଣାବଳୀ ସହ ତାଙ୍କ ମନର କନ୍ଦରେ ପ୍ରଥମ ରଙ୍ଗଠାରୁ ଆରମ୍ଭ କରି

ଧୀରେ ଧୀରେ ରଙ୍ଗ ଆଉ ବାସ୍ନାର ଆନନ୍ଦ ସହ ଜଡ଼ିତ ଥିଲେ ପ୍ରତାପରୁଦ୍ର । ଏଣୁ ହଠାତ୍ ମ୍ରିନାଲର ବିଦାୟପରେ ରେବା କାନ୍ଦିଥିଲା ବହୁ ସନ୍ଧ୍ୟାରେ ପ୍ରତାପରୁଦ୍ରଙ୍କ ଠାରେ । ପରେ ପ୍ରତାପରୁଦ୍ର ବହୁ ଚେଷ୍ଟା କରିଥିଲେ ମ୍ରିନାଲ ସହ ପୁଣି ରେବାର ସମ୍ପର୍କ ଯୋଡ଼ିବାରେ । ସବୁ କିନ୍ତୁ ମ୍ରିନାଲ ଠେଲି ଦେଇଥିଲା । ବହୁ ଦିନ ତଳେ ବାପା ତାର ଚାକିରି କରିଥିଲେ ଓଡ଼ିଶାରେ । ତେଣୁ ସେତିକି ମାତ୍ର ଓଡ଼ିଶା ସହ ତାର ସମ୍ପର୍କ । ବାପାଙ୍କ ମୃତ୍ୟୁ ପରେ ତାକୁ ଫେରିବାକୁ ହୋଇଥିଲା ଧାନବାଦ ପାଖରେ ଥିବା ପୁରୁଣା ଭିଟାମାଟିକୁ । ମା ଓ ଭାଇ ଭଉଣୀଙ୍କ ବଞ୍ଚିବାର ସଂଘର୍ଷ ମଧ୍ୟରେ ରେବା ସହ ସାନ୍ନିଧ୍ୟର କଥା ଧୀରେ ଧୀରେ ମଉଳି ଯାଇଥିଲା ।

ଏହାପରେ ରେବା, ମ୍ରିନାଲ ସମସ୍ତଙ୍କୁ ଛାଡ଼ି ପ୍ରତାପରୁଦ୍ର ନିଜ ଜୀବନ-ସଂଗ୍ରାମରେ ବ୍ୟସ୍ତ ରହିଥିଲେ । ବହୁ ଦିନ ପରେ, ବାହାଘରର ଛ ବର୍ଷ ପରେ ସେ ଯେତେବେଳେ ଦିଲ୍ଲୀରେ କଣ ଗୋଟେ ଟ୍ରେନିଂରେ ଥିଲେ, ମ୍ରିନାଲର ଗ୍ରେଷ୍ଠ ଏକ ଚିଠି ରିଡ଼ାଇରେକ୍ଟ ହୋଇ ବହୁ ଡେରିରେ ଆସି ପହଞ୍ଚିଥିଲା । ସ୍ୱାଭିତରେ ସେ ରେଲୱେରେ ଗ୍ରେଡ ଗୋଟେ କଣ୍ଡା ଚାକିରି ପାଇଥିଲା ମାସକୁ ମାତ୍ର ପାଞ୍ଚଶ କି ଛଅଶ ଟଙ୍କାରେ । ସ୍ତ୍ରୀ ଝିଅପିଲା ମିଶି ପାଞ୍ଚଜଣ । ଅଭାବର ଦୁନିଆଁରେ କୌଣସି ମତେ ଚଳି ଯାଉଥିଲେ । କିନ୍ତୁ ହଠାତ୍ ପୁରୁଣା କିଛି ପାଉଣା ନେଇ ତାଙ୍କ ପୁରୁଣା ଘରଜମି ସବୁରେ କେହି ଜଣେ କୋର୍ଟ ଡ଼ିକ୍ରୀ ଆଣେ । ଆଉ ସେ ବାବଦକୁ ମାତ୍ର ତିନିହଜାର ଟଙ୍କା ମାଗି ଏତେ ବର୍ଷ ପରେ ଚିଠି ଲେଖିଥିଲା ମ୍ରିନାଲ ଦାସ ।

ଟଙ୍କା ଏତେ ଅବଶ୍ୟ ପାଖରେ ନଥିଲା । ଚେଷ୍ଟା କରିଥିଲେ ବନ୍ଧୁମାନଙ୍କ ପାଖରୁ ଧାରକରି ପଠାଯାଇ ପାରିଥାନ୍ତା । କିନ୍ତୁ କେମିତି କେଜାଣି କଥାଟା ଉପରେ ବିଶେଷ ଗୁରୁତ୍ୱ ଦେଇ ପାରି ନଥିଲେ ସେ । କିଛିଦିନ ପରେ ଟ୍ରେନିଂରୁ ଫେରିବା ପରେ, ଅନୁରାଧା ଚିଠିଟି ପଢ଼ି ବିଶେଷ

ବ୍ୟସ୍ତ ହେବାରୁ ସେ ମଧ୍ୟ ଅନୁଭବ କଲେ ଭୁଲଟା । ସଙ୍ଗେ ସଙ୍ଗେ ସେ ଟଙ୍କା ଯୋଗାଡ଼ କରି ମନିଅର୍ଡ଼ର କରି ପଠାଇଲେ ମ୍ରିନାଲ ଦାସ ଠିକଣାରେ । ପ୍ରଥମେ ମ୍ରିନାଲ ଦାସର ଚିଠିଟା ରିଡ଼ାଇରେକ୍ଟ ହୋଇ ସେଇ କଲେଜ ହନର ପ୍ରଦତ୍ତ ତାଙ୍କ ଗାଁ ଘର ଠିକଣାରୁ ବୁଲି ବୁଲି ତାଙ୍କ ପାଖରେ ପହଞ୍ଚିବାକୁ ପ୍ରାୟ ମାସେରୁ ଅଧିକ ସମୟ ଲାଗିଥିଲା—ତାପରେ ପୁଣି ଦେଢ଼ମାସ ପ୍ରାୟ ଡେରି । ଟଙ୍କାଟା ଫେରି ଆସିଲା । ଏଡ୍ରେସି କେଉଁଠି ମିଳିଲେ ନାହିଁ । ଚିଠି ଲେଖିଲେ । ତା ମଧ୍ୟ ଫେରି ଆସିଲା ।

ଏଇ ହେଲା ପ୍ରତାପରୁଦ୍ରଙ୍କ ଜୀବନର ଘା । ହଠାତ୍ ଆଜି ମ୍ରିନାଲର ଅବସ୍ଥା ଦେଖି ସେ ଘା ଯେ ସେପ୍ଟିକ୍ ହେବା ଅବସ୍ଥା ଏହା ଅନୁରାଧା ଠିକ୍ ଅନୁମାନ କଲେ ।

ପ୍ରତାପରୁଦ୍ର ଆହୁରି ଭାବାବେଗ ହୋଇ କହିଲେ "ସବୁଠୁ ଇଣ୍ଟରେଷ୍ଟିଂ ପାର୍ଟଟା ଶୁଣ—ଆଜି ଦୀର୍ଘ ଛବିଶ ବର୍ଷପରେ ମ୍ରିନାଲ ସହ ମୋର ଦେଖା । ତାର ସପ୍ତାହଭରି ଦାଢ଼ିନିଶ ଆଉ କୋଇଲାର ଆସ୍ତରଣ ଭିତରେ ମଧ୍ୟ ମୁଁ ତାକୁ ଠିକ୍ ଚିହ୍ନି ପାରିଥିଲି ଏବଂ ମୋର କନେଷ୍ଟବଳ ହାତରେ ବନ୍ଧା ହୋଇ ଧକ୍‌କା ଖାଇ ଆଗେଇ ଆସିବାବେଳେ ପୋଲିସ ଡ୍ରେସ୍ ଆଉ ବାଘୁଆ ନିଶ ଭିତରେ ମଧ୍ୟ ସେ ମୋତେ ଠିକ୍ ଚିହ୍ନି ପାରିଥିଲା । କିନ୍ତୁ ସେ ସେମିତି ମୋରି ସାମ୍ନାରେ ବନ୍ଧାହୋଇ ତା ଅନୁଚର ଦୁଇଜଣଙ୍କ ସହ ଲକ୍‌ଅପ୍ ଭିତରକୁ ଠେଲି ହୋଇ ଗଲାବେଳେ ମୁଁ ମୋ ଷ୍ଟାଫ୍‌ଙ୍କର ସାଲ୍ୟୁଟ୍ ଖାଇ କେସର ସକ୍‌ସେସ୍ ପାଇଁ ଧନ୍ୟବାଦ ନେଇ ଘରକୁ ଫେରି ଆସିଚି ।"

ଅନୁରାଧା ସ୍ୱାମୀଙ୍କ ମୁହଁକୁ ଚାହିଁ ରହିଲେ । ଲୁହ ଜକେଇ ଆସିଲା ତାଙ୍କ ଆଖିରେ ।



# ମରୀଚିକା

ବିଜୟକେତନଙ୍କୁ ସେଇ ପଶ୍ଚିମ-ପଥିକର ଜୀବନ ବେଶ୍ ସୁହାଇ ଥିଲା । ବାପାଙ୍କର ଏତେଗୁଡ଼ାଏ ଅର୍ଥ ଶ୍ରାଦ୍ଧକରି ସେ ୟୁରୋପ, ତା' ପରେ ଆମେରିକାରେ ପଢ଼ା ନାଁରେ ଏତେ ଗୁଡ଼ାଏ ବର୍ଷ କଟାଇ ଆସିଥିଲେ । ଛାଠ ଭିତରେ ଡ଼କ୍ଟରେଟଟିଏ ଛଡ଼ା କଣ ବା ସେ ପଢ଼ା; ଖାଲି ବିଭିନ୍ନ ୟୁନିଭର୍ସିଟି, ଇନ୍‌ଷ୍ଟିଚ୍ୟୁଟରେ ଲଟକ ପ୍ରଫେସରମାନଙ୍କ ରିସାର୍ଚ୍ଚ ଗ୍ରୁପ୍ ସହ ଜଡ଼ିତ ହୋଇ କେତୋଟା ପେପାର ପବ୍ଲିକେସନରେ ନାଁ ନେବା ଛଡ଼ା କଣ ବା ତାଙ୍କର ଅବଦାନ । କିନ୍ତୁ ଏସବୁ ତାଙ୍କ ମନକୁ ପଚାରି ସେ ନିରୁତ୍ତର ହେଲେ କଣ ହେବ—ସେ ମନେ ମନେ ହସନ୍ତି ।

ଫେରିଆସି ଯେଉଁ ୟୁନିଭର୍ସିଟିକୁ ସେ ଚେଷ୍ଟା କରିଚନ୍ତି, ତାଙ୍କ ଜୀବନରେ ପଶ୍ଚିମୀବର୍ଷ ଗୁଡ଼ାକର ଏକ ତାଲିକା ଦେଇ; ପ୍ରଫେସର ଗୃହକିଷ୍ଣରେ ଅଭାବ ହୋଇ ନାହିଁ କେଉଁଠି ? ଏଣୁ ଶେଷବେଳକୁ ବନ୍ଧୁ ବନ୍ଧ୍ ବାନ୍ଧବଙ୍କ ଆପତ୍ତି ସତ୍ତ୍ୱେ ନିଜ ରାଜ୍ୟର ୟୁନିଭର୍ସିଟିକୁ ସେ ଗ୍ରହଣ କରିନେଲେ, ନିଜର ଭବିଷ୍ୟତ ଜୀବନର କର୍ମସ୍ଥଳୀ ରୂପେ । ଏଠି ତାଙ୍କୁ ପଢ଼ାଇବାକୁ ପଡ଼େନା, କାରଣ ସେ ଏର୍: ଓ: ଡ଼: । ମୁଣ୍ଡରେ ବହୁତ କାମ—ପୁଣି ସେ ହସନ୍ତି—

ସବୁ ଜାନତା ଡ଼ିପାର୍ଟମେଣ୍ଟ କବ୍ଜ ଜଣେ ଯୁନିଭର୍ସିଟି ରେଜିଷ୍ଟ୍ରାର ଠାରୁ ଫାଇନାନ୍ସ ପର୍ଯ୍ୟନ୍ତ ସମସ୍ତଙ୍କୁ ଖୁସି କରି ରଖିଛ । ଏଣୁ ତା କଥାକୁ ସବୁଥିରେ ହଁ ମାରିଦେଲେ କାମଶେଷ—ସବୁ ସେ ନେଇ ଆଣି ଥୋଇ-ଦେବ । ହେଲେ ପ୍ରଫେସର ତଥା ଏଚ-ଓ-ଡିଙ୍କ ଦସ୍ତଖତରେ ସବୁ ହେବା କଥା । ସେତକ କରିବାକୁ ପଡ଼େ । ଏଣୁ ତାଙ୍କୁ ପଶୁରିବା ପରି ଟ୍ରେଷ୍ଟ କାମଟେ କରିବାକୁ ସମୟ ମିଳେନା । ମିଳେନା ଠିକ୍ ନୁହେଁ; ତେବେ ଡିପାର୍ଟମେଣ୍ଟରେ ଅନ୍ୟମାନେ ସାରଙ୍କୁ ବୋଝଦେବାକୁ ନାରଜ । "ଆପଣ ସାର୍ ବ୍ୟସ୍ତ ହୁଅନ୍ତୁନ—ଆମେ ଚଳାଇ ନେବୁ ସବୁ ।" ସତରେ ଡ଼ିପାର୍ଟମେଣ୍ଟ ସାରା ସବୁ ଷ୍ଟାଫ୍ କାହିଁକି, ଏତେଗୁଡାଏ ବେର୍ ପିଲ୍; ସମସ୍ତେ ପ୍ରଫେସରଙ୍କ ବିନା କ୍ଲାସରେ ସବୁ ଚଳାଇ ନେଇଚନ୍ତି । ଖାଲି ତାଙ୍କ କ୍ଲାସ ନେବାରେ ଯେ ଅସୁବିଧା ତା' ନୁହେଁ ଗିରିକିଶୋର, ସୁରେନ୍ଦ୍ରମୋହନ, ମୃଦୁଳ, ରଘୁରାମ ସମସ୍ତେ ବିଭିନ୍ନ ପ୍ରକାର ଏକାଡ଼େମିକ କାମ ନେଇ ବ୍ୟସ୍ତ । ଦୁଇ ଜଣତ ସବୁବେଳେ ବଡ଼ ସରକାରୀ ଅଫିସରଙ୍କ ଡ଼କ୍ଟରେଟ୍ ପାଇଁ ଥେସିସ ତିଆରି କରିବାରେ ବ୍ୟସ୍ତ । ଆଉ କେତେଜଣ ଟ୍ୟୁଟୋରିଆଲ୍ କଲେଜ, କରେସ୍‌ପଣ୍ଡେନ୍ସ୍ କୋର୍ସ (ପ୍ରାଇଭେଟ୍ ହେଲେବି) ନେଇ ବ୍ୟସ୍ତ । ଯାହାହେଲେବି ଏ ସବୁ ଶିକ୍ଷାର ଉନ୍ନତି ଦିଗରେ ହିଁ ଏକ ପ୍ରକାର ପ୍ରଚେଷ୍ଟା, ଏଥିରେ ସନ୍ଦେହ ନାହିଁ । ଏସବୁ ମନରେ ବିଶେଷଭାବରେ ଆଲୋଡ଼ନ ସୃଷ୍ଟି କଲେ, ସେ ମନେ ମନେ ଟିକେ ହସନ୍ତି ।

ଭାବନ୍ତି ସେ, ଏଥିପାଇଁ ଯୁନିଭର୍ସିଟିର ନା ଗୁରୁମାନଙ୍କର ଅବା ଦେଶର କିଛି କ୍ଷତି ହେଉଚି । ଯୁନିଭର୍ସିଟିର ନାମ ଅଛି- ଏଣୁ ଫାଷ୍ଟକ୍ଲାସ୍ ସହଜରେ ନେଇ ହେବନି-ବାଛି ବୁଛି ବାପା କଣ କରନ୍ତି,-ଡ଼ିପାର୍ଟମେଣ୍ଟର ଷ୍ଟାଫ ସହ ବସି, ଆଗରୁ ଟିକେ ଖବର ନେଇ, ପିଲାମାନଙ୍କର କିଏ କେଉଁ କ୍ଲାସ ପାଇବ, ଆଗରୁ ଟିକେ ଫିକ୍ସ କରିଦେଲେ କାମଶେଷ । ଅବଶ୍ୟ

ଏ ବିଷୟରେ ଡିପାର୍ଟମେଣ୍ଟରେ ଗ୍ରୁପିଜିମ୍ ନେଇ ବହୁତ ଦ୍ୱନ୍ଦ୍ୱ ଅଛି; ହେଲେ ଇଆଡ଼େ ଭାଇସ୍ ଚାନ୍ସଲରଙ୍କଠାରୁ ଆରମ୍ଭକରି ଡିପାର୍ଟମେଣ୍ଟର କିରାନି, ଆଉ ସିଆଡ଼େ ଚାନ୍ସଲରଙ୍କଠାରୁ ଆରମ୍ଭ କରି ମନ୍ତ୍ରୀ, ସେକ୍ରେଟାରୀ ଡ଼ି: ପି: ଆଇ ତଥା ସେକ୍ରେଟାରିଏଟ୍‌ର ସେକ୍ସନ୍ ଅଫିସର ପର୍ଯ୍ୟନ୍ତ ପ୍ରାୟ ସବୁଠି ଗ୍ରୁପିଜିମ୍ ଅଛି । କିନ୍ତୁ ମଇଁଷି ଶିଂଗ ଯୁଝିଲାବେଳକୁ ଗୋଟା ହେବାର ନମୁନା ପ୍ରାୟ ସବୁବେଳେ ଦେଖାଯାଏ । ନିହାତି ବେଶୀ ଗଣ୍ଡଗୋଳିଆ ହେଲେ ଜଏଣ୍ଟ ଫାଷ୍ଟ କରିଦେଲେ ସମସ୍ତେ ଖୁସି । ଏଗୁଡ଼ା ଆଉ ଗଣ୍ଡଗୋଳ ଭିତରେ ଯାଉନି । ସବୁବର୍ଷ ଏ ପ୍ରକାର କମ୍ପ୍ରୋମାଇଜ୍ ପାଇଁ ଆଗରୁ ଟିକେ ଫିଲଡ଼୍ ରେଡିକରି ରଖିବା କଥା ।

ତାଙ୍କ ଚେୟାରଟା ସବୁଦିନେ ଝରକା ମୁହାଁ । ଏମିତି ଝରକାଦେଇ ବସିଲେ ସେ ବାହାରକୁ ଚାହିଁ ବହୁତ ସମୟ ଭାବନ୍ତି, ଆଉ ଖାଲି ମନେ ମନେ ହସନ୍ତି । ଠିକ୍ ତାଙ୍କ ବସିବା ସ୍ୱନାମଧନ୍ୟ ଜାଗାରୁ (ପ୍ରଥମେ ସେ ଯେବେ ସେ ରୁମ୍‌ରେ ବସୁଥିଲେ ) ସାମ୍ନାଝରକା ଦେଇ ଚାହିଁଲେ ରାସ୍ତା ଆରପାଖ ଏଡ଼ମିନିଷ୍ଟ୍ରେଟିଭ୍ ବିଲ୍ଡ଼ିଂର ବାରଣ୍ଡା ଦେଖାଯାଏ । ଆଉ ବିଶେଷକରି ସେଇ ବାରଣ୍ଡାର ଯେଉଁ ଯୋଡ଼ା-ଖମ୍ବ ଦିଟା ଠିକ୍ ତାଙ୍କ ଆଖି ସାମ୍ନାରେ, ସେଇ ଯୋଡ଼ା-ଖମ୍ବ ଦିଟା ପୁରୁଣା ଆଉ ନୂଆ ବ୍ଲକର ସନ୍ଧି । ଠିକ୍ ଏଇ ଯୋଡ଼ା ଖମ୍ବ ତାଙ୍କ ଅତୀତର ଦୁଇଟା ଜୀବନର ସନ୍ଧି । ସେଇଠି ଠିଆହୋଇ ସେ ଦୁଇ ଦିନରେ ଖାଲି ଯେ ଅସାଧ୍ୟ ସାଧନ କରି ନଥିଲେ ତା ନୁହେଁ, ଶୃଙ୍ଖଳାଗତ ଦଣ୍ଡବିଧାନକୁ ଏଡ଼ାଇ ସେ ନିଜ ନାଁକୁ ପ୍ରଥମ ଶ୍ରେଣୀର ଦ୍ୱିତୀୟ ସ୍ଥାନରେ ପହଞ୍ଚାଇ ପାରିଥିଲେ । ସେଇ ଦୁଇକଲମର ସନ୍ଧିରେ ବସି ପିଅନ, କିରାନି ସମସ୍ତଙ୍କୁ ବାହାରକୁ ଡାକି ଅନୁନୟ ବିନୟଠାରୁ ଆରମ୍ଭ କରି ସମସ୍ତଙ୍କର ଆଶାତୀତ ମନଖୁସିର ବ୍ୟବସ୍ଥା ସେ କରିଥିଲେ । ସେଇ ଯୋଡ଼କଲମ ତଳେ ଶିକ୍ଷା ବିଭାଗର ସେକ୍ସନ୍ ଅଫିସର ଆସି ୟୁନିଭରସିଟି ଏକ୍‌ଜାମିନେସନ୍ ସେକ୍ସନ୍‌ର

କର୍ମଜନମାନଙ୍କ ସହ ଖୁସିଗପ ସହ ପରସ୍ପର ପ୍ରତି ସୁବିଧାର ଆଦାନପ୍ରଦାନର ଚୁକ୍ତି କରିଚନ୍ତି । ଏଜୁକେସନ ସେକ୍ରେଟାରି କୃତକୃତ୍ୟ ରେଜିଷ୍ଟ୍ରାରଙ୍କ ରୁମ୍‌ରୁ ବାହାରିଆସିବା ବେଳକୁ ଦୁଇଘଣ୍ଟା ଧରି ରେଜିଷ୍ଟ୍ରାରଙ୍କ ରୁମ୍‌ରେ ପାଦଧୂଳି ପକାଇବାର କାରଣଟା ରୁମ୍‌ଭିତରେ ନକହି ପାରି ସେଇ ଯୋଡ଼ କଲମ ତଳେ କହିଯାଉଚନ୍ତି । ଆଉ ବାକିଯାହା କହିଯାଉଚ ସେଗୁଡ଼ା ସେଇ ପୁରୁଣା ବ୍ଲକର ଅନ୍ଧାରିଆ କୋଣଗୁଡ଼ା ପରି ଅନ୍ଧାର ଓ ଅସନା, ଏଣୁ ତାକୁ ମନେ ପକାଇବାକୁ ଟିକେ ଅସୁବିଧା ହୁଏ । ସବୁଦିନେ ଏମିତି ଏଇ ଝରକାମୁହାଁ ବସି ବିଜୟକେତନଙ୍କ ମନ ସେଇ ଯୋଡ଼-କଲମର ପଛରେ ପୁରୁଣା ଅନ୍ଧାରୁଆ ବ୍ଲକ ପରି ନୂଆ ବ୍ଲକରେ ତାଙ୍କ ପରବର୍ତ୍ତୀ ରଙ୍ଗୀନ ଆଉ ଉଜ୍ଜ୍ୱଳ ଜୀବନଟାର ଐଶ୍ୱର୍ଯ୍ୟାଲୋକରେ ପାଲିସ କରିଇ ନଅନ୍ତି । ମୁହଁରେ ହସ ପୁଣି ଫୁଟିଉଠେ ।

ପ୍ରଫେସରଙ୍କ ଝିଅକୁ ବାହାହେବାର ପ୍ରତିଶ୍ରୁତି ଦେଇ ଫାଷ୍ଟକ୍ଲାସ୍‌ଫାଷ୍ଟ ସହ ଲଣ୍ଡନରେ ୟୁନିଭର୍ସିଟି ଫେଲୋସିପ୍ ଇତ୍ୟାଦିର ରେକମେଣ୍ଡେସନ ଧରି ସେ ପଶ୍ଚିମଦେଶଗୁଡ଼ାକରେ ଗୁଡ଼ାଏ ବର୍ଷ କଟାଇ ଦେଲେ । ତାଙ୍କର ଜୀବନ ଏକ ପ୍ରହେଳିକା । ଯାହେତୁ ସେଇ ପ୍ରଥମ ବର୍ଷ ଗୁଡ଼ାକରେ ପ୍ରଫେସରଙ୍କ ରେକମେଣ୍ଡେସନ୍‌ର ସୁବିଧାରେ ଡ଼କ୍‌ଟରେଟ୍ ତାଙ୍କ ହାତରେ ପ୍ରଫେସରଙ୍କ ବନ୍ଧୁମାନେ ଧରାଇ ଦେଇଥିଲେ । ଆଜି ସେ ତାଙ୍କର ଚେୟାରରେ ବସିବାକୁ ଯିବାବେଳକୁ ତାଙ୍କ ପ୍ରତି ପ୍ରତିଶ୍ରୁତି ଭଙ୍ଗ କରି କିଛି ଅନ୍ୟାୟ କରିଛନ୍ତି ବୋଲି ଭାବିବା ପୂର୍ବରୁ ଚେୟାରଟା ବୁଲାଇ ନେଇ କାନ୍ଥଆଡ଼କୁ ମୁହାଁଇକରି ବସିବା ଆରମ୍ଭ କରିଥିଲେ । ତଥାପି ସମୟପାଇଲେ ସେ ସେଇ ବାହାର ଝରକାଆଡ଼କୁ ମୁହାଁ ପୁଣି ହସନ୍ତି ।

# ଆଦ୍ୟରାଗ

ଯିଏ ଯେତେ ଯାହା କହିଲେ ବି ସୁଶୋଭନ ଯେ ବେଶ୍ ବାଗ୍ମୀ ଓ ତାଙ୍କ ବକ୍ତୃତାରେ ଗଭୀର ଜ୍ଞାନର ଅସ୍ତିତ୍ୱ ଉପଲବ୍ଧି କରିହୁଏ । ତାଙ୍କ ଲୋକବି ଠିକ ତାଙ୍କର ଅନୁଷ୍ଠାନଗତ ବିଦ୍ୟାର ପରିମାଣ ବିଷୟରେ ନିଃସନ୍ଦେହରେ ବି: ଏ: ବୋଲି କହିବା ପାଇଁ କେମିତି ବାଁରେଇଲା ପରି ମନେହୁଏ । ଆର ଦଳର ପିଲାଏ ସବୁତ କହିବୁଲନ୍ତି ମାଟ୍ରିକ ଫେଇଁନ । ରଜାଘର ପିଲା, ଇଂଲଣ୍ଡ ମିଡିଅମରେ ପଢ଼ିଥିଲାକି ଘରେ ଟ୍ୟୁସନ ହେଉଥିଲା ବୋଲି ଇଂଲିଶ୍‌ରେ ଫଁ ଫଁ ଦୁଇପଦ ଝାଡ଼ ଦେଉଛି ସିନା, ହେଲେ ପାଠ ଘରେ ଶୂନ୍ । କିନ୍ତୁ ତାଙ୍କ ସମସାମୟିକ ଓ ବିଶେଷ ଜାଣିଥିବା ଲୋକ ସବୁ ଠିକ୍ ଜାଣିବାପରି କହିବୁଲନ୍ତି "ସେ ପରା ରାଜକୁମାର କଲେଜରେ ସେ ବର୍ଷ ପ୍ରିନ୍‌ସିପାଲଙ୍କୁ ଚପଡ଼ାଟାଏ ମାରି ପଳାଇ ଆସିଥିଲେ ।"

ଠିକେ ଜାଣି ନଜାଣିଲା ପରି ଅନ୍ୟ (ଆର ଦଳର କେହି ହୋଇପାରେ ଭବ) ମାନଙ୍କୁ ଶୁଣାଇବା ପାଇଁ କିଏ ଜଣେ ପଚାରେ "କଣ ହେଲା, କଣ ହେଲା, ପିଟିପକାଇଲେ ?"

ବର୍ତ୍ତମାନ ରାଜାଙ୍କ ପାଖଲୋକ ତାଙ୍କର ଅତିବେଶୀ ନିକଟର ବୋଲି ପ୍ରମାଣ କରିବାପାଇଁ; ସତେ ଯେମିତି ସେ ବି ରାଜକୁମାର କଲେଜରେ ତାଙ୍କ ସଙ୍ଗେ

ପଢ଼ୁଥିଲେ କ କ'ଣ ଭାବ ଦେଖାଇ ଆରମ୍ଭ କରନ୍ତି "ଆରେ କଥାଟା କଣ ଲୁଚିଛପାକ—ସେତେବେଳେ ଖବରକାଗଜରେ ଏଡ଼େ ବଡ ଅକ୍ଷରରେ ବାହାର ଥିଲନା ।"

"କଣ କଥାଟା କୁହନା ମକରବାବୁ" କଏ ଜଣେ ଯୋଡ ଦଅନ୍ତି ।

"ଆଜ୍ଞା ରଜାପୁଅଟ ! କଣ ଗୋଟେ ଦୋଷ ବାହାର କଲ୍ ସେ ପ୍ରିନସିପାଲ୍ । ଯାଙ୍କୁ ଜମା ସହିପାରୁନଥିଲ ସେ । 'ଦୋଷ କଣ' ବୋଲି ପଚାରିବା ପାଇଁ ଇଏ କୁଆଡ଼େ ପ୍ରିନସିପାଲ ଘରକୁ ପେଲଗଲେ । କଣ ସବୁ ଗରମା ଗରମ ହେଲ । ହେଲେ ତାଙ୍କ ଘରଟା ବୋଲ ବାପପୁଅ ଫେରଆସିଲ । ତା ପରଦିନ ଅଫିସକୁ ଯାଇ ଥୋଇଲ ୨ଟା, ଆଉ କଲେଜ ଛାଡ ଫେରଆସିଲ । ସବୁ ଯା ତା ମୁହଁକୁ ଚାହିଁଲେ । ବୁଢାଟିଏ କଏ ଯାହିଁ ଯାଉଁ କହିଲ "ହଁ, ରଜାପୁଅ କେତେ ସହିବ ସେ ମ୍ଳେଚ୍ଛଗୁଡ଼ାଙ୍କ କଥା ? ହଁ ଇଏବା ଆମର କେଉଁ ଗୁଣରେ କମ୍ ଯେ । ପାଞ୍ଚଟା ପଣ୍ଡିତର ନାକ କାଟିଦେବନ" ।

ଏଇମିତ ଗଳ୍ପ ଆଜ ଗୁଜବରୁହିଁ ସୁଶୋଭନ ସି ମର୍ଦ୍ଦରାଜଙ୍କ ଅଜ୍ଞାତର ଗୁପ୍ତ ଇତିହାସରୁ ଖଣ୍ଡେ ଖଣ୍ଡେ ଇଆଡ଼େ ସିଆଡ଼େ ଜଣାପଡେ । ଏଇଟା ସତକଥା ଯେ, ସେ ରାଜକୁମାର କଲେଜରେ ପଢ଼ୁଥିଲେ; ହେଲେ ପ୍ରିନସିପାଲଙ୍କ ସହ ଠୋକାଠାର କଣ ବା ଗଣ୍ଡଗୋଳ ହୋଇପାରେ ! କଣ ଦୋଷଥିବ ନଷ୍ଟପୁ—ତଡ଼ାଖାଇ ଅସିଥିବେ । ତାକୁ ଲୁଚେଇ ନିଜ ବଡ଼ିମା ପ୍ରମାଣ କର କହିବାତ ପ୍ରାୟ ସାଧାରଣ କଥା ।

ହେଲେ ଆଉ ପାର୍ଟି ଛାଡ଼ନ୍ତେନ । ଧୂଆଁ ଟିକେ ହେଲେ ନିଆଁ ବାହାରକର ସାରନ୍ତେଣି ଦଳଟା । ଇଲେକ୍‌ସନ୍ ବେଳଟା—ଏଣୁ ତେଣୁ କେତେ କେତେ ମିଛକଥା ଗୁଡା ଉଠେଇଚନ୍ତି; ଆଉ ଏମିତ ଗୋଟେ

ମଜାଦାର କଥାର କିଛି ସତ୍ୟତାଥିଲେ ତାକୁ ଆଣି ରଜା ମୁହଁରେ ଚୂନକାଳି କରି ପାରନ୍ତେଣି । ମାଁ କଥାଟା କିଛି ଅନ୍ୟରକମର—ଏଥିରେ ସନ୍ଦେହ ନାହିଁ ।

ସୁଶୋଭନବାବୁ ହଠାତ୍ ଏତେବର୍ଷ ପରେ ଗାଁ ଗାଁ ବୁଲି ଲୋକଙ୍କୁ ଭିକ୍ଷାମାଗିବା ପରି ଭୋଟମାଗି ବୁଲୁଥିଲେ । କଲେଜ ଛାତ୍ର ଥିବାବେଳକୁ ରାଜତ୍ୱ ଗଲାଣି । ହେଲେ ବି ୪୦ବର୍ଷର ସ୍ୱାଧୀନ ଭାରତର ପ୍ରଜାପରି ନିଜ ରାଜ୍ୟରେ ସେ ରହିପାରି ନାହାଁନ୍ତି । ସହରରେ ରହି କେବେ କେମିତି ମଉଜ ମଜଲିସ୍ ପାଇଁ ବନ୍ଧୁମାନଙ୍କ ସହ ବା ବଂଶରେ କିଛି କର୍ମ କର୍ମାଣୀରେ ଆସିବା ଛଡ଼ା ସେ ନିଜ ରାଜ୍ୟ କେବେ ଦେଖି ନଥିଲେ । ତେଣୁ ଆଜି ଦ୍ୱାର ଦ୍ୱାର ବୁଲିବାଟା ତାଙ୍କୁ ଯେତେ ଅସୁବିଧା ହେଲେବି ରାଜ୍ୟର ପୁରୁଣା ବୁଢ଼ାବୁଢ଼ୀ ସବୁ ଯେତେବେଳେ ଆସି "ଆମ ରଜା" କହି ମୁଣ୍ଡିଆ ମାରନ୍ତି, ତାଙ୍କ ଛାତି କୁଣ୍ଢେ ମୋଟ ହୋଇଯାଏ । ପ୍ରତ୍ୟେକଦିନ ସକାଳୁ ବାହାରି କେଉଁଠି ଗାଡ଼ିରେ, କେଉଁଠି ସାଇକେଲରେ ଆଉ କେଉଁଠି ଶଗଡ଼ଗାଡ଼ିରେ ବା ଚାଲିକରି ଯିବାକୁ ପଡ଼େ—ଫେରୁ ଫେରୁ ରାତି ୧୦ କି ୧୨ ତାର ଠିକ୍ ନାହିଁ । ଏତେ ଚାଲିବୁଲିର କିଛି ଅଭ୍ୟାସ ନଥାଇ ମଧ୍ୟ ସୁଶୋଭନବାବୁ କାହିଁ ଥକିଯାଇ ନାହାନ୍ତି, ବରଂ ପରଦିନ ସକାଳୁ ଚାହିଁ ରହନ୍ତି, ନୂଆ ଅଞ୍ଚଳରେ ନୂଆ ଲୋକଙ୍କୁ ଭେଟିବାକୁ । ତାଙ୍କର ନିଜର ଅଥଚ ତାଙ୍କ ପାଇଁ ନୂଆ ଲୋକଙ୍କ ସହ ପରିଚୟ ହେବାଟା ସତେ ଯେପରି ତାଙ୍କର ଏକ ନିଶା ।

ଗାଁ ଗାଁ ବୁଲି ଇଲେକ୍‌ସନ୍‌ର ଭୋଟ ଭିକ୍ଷା ଶେଷ ହୋଇଛି । ଆଜି ଗଣତି । ସହରର ବହୁ ବନ୍ଧୁ, ସମବୟସ୍କ ଆସି ତାଙ୍କ କ୍ୟାମ୍ପରେ ସକାଳୁ ଉଦାତ୍ତ ସାହସ, ଆଶା ଆଉ ଶୁଭକାମନା ଦେଇ ଫେରିଯାଉଛନ୍ତି । ଗୁଡ଼ାଏ ଲୋକ ଆସି ଉଆସ ଗୃହଦ୍ୱାରେ ଜମିଛନ୍ତି । ପାର୍ଟିଲୋକ ପାଖକୁ ବହୁ

ଚହ୍ଲାଭିତରେ କେତେ ଅଚହ୍ନା ବି ଅଛନ୍ତି । ସେ ଆଗେଇ ଯାଇ ଅଚହ୍ନା ଲୋକଙ୍କ ସହ ହାତମିଳାଇ କଥାବାର୍ତ୍ତା କରୁକରୁ ଗାଡ଼ିରେ ଉଠିଲେ । ବନ୍ଧୁ ବ୍ରଜଭାନୁ ପାଖରେ ବସୁ ବସୁ କହୁଥିଲା "ଶୋଭନ ଦା, ଆପଣଙ୍କର ସବୁଦିନେ ଅଭ୍ୟାସ ନୂଆ ଲୋକଙ୍କ ସହ ଜବରଦସ୍ତି ବନ୍ଧୁତା କରିବା, ନାଇଁ ?

ସୁଶୋଭନ ପଚାରିଲେ "କାହିଁକି ହଠାତ୍ ଏ କଥା ?"

"ନା, ମାନେ ଏଇ ଦେଖ କ୍ଲବରେ ହେଉ କି ଖେଳପଡ଼ିଆରେ ହେଉ, ମୁଁ ଦେଖେ ତମେ ସବୁବେଳେ ଉପରେ ପଡ଼ି ସମସ୍ତଙ୍କ ସହ ଚହ୍ନା ପରିଚୟ ହେବାକୁ ଚେଷ୍ଟାକର—ନା ନାଇଁ କହୁନ ?"

"ହଁ ସତକଥା, ସେଇଟା ମୋର ଗୋଟେ ବଦଭ୍ୟାସ, କିନ୍ତୁ ତାର ଗୋଟେ ବଡ଼ କାରଣ ଅଛି ।"

ବନ୍ଧୁ ବ୍ରଜଭାନୁ ଆଶ୍ଚର୍ଯ୍ୟ ହୋଇ କହିଲେ "କାରଣ ? କାରଣ କଣ ପୁଣି ?"

ସୁଶୋଭନ ମନେ ମନେ ଟିକେ ହସିଲେ । ସତେ ଯେପରି ତାଙ୍କ ଅତୀତର ପୃଷ୍ଠା ସବୁ ପୁଣି ଖୋଲି ଯାଉଥିଲା, ଆଉ ମନ ତାଙ୍କର ପୁଲକିତ ହୋଇ ଉଠିଲା । ସେ ନୀରବ ରହିଲେ କିଛିସମୟ । ବ୍ରଜଭାନୁ ଚୁପ୍ ରହିଲେ ଉତ୍କଣ୍ଠାର ସହ । ଏମିତି ସୁଶୋଭନ ବହୁ ସମୟରେ ହଠାତ୍ ଚୁପ୍ ହୋଇଯାନ୍ତି । ସତେ ଯେମିତି ଅତୀତର କିଛି ଗୋଟେ ତାଙ୍କୁ ମୂକକରି ଦିଏ । ସେ ନୀରବରେ ମନେ ମନେ ହସି ଏମିତି ବହୁବାର ଚୁପ୍ ହୋଇଯାନ୍ତି ।

ସୁଶୋଭନ ହଠାତ୍ ନୂଆ ଲୋକଙ୍କ ସହ ତାଙ୍କର ଅତିମାତ୍ରାରେ ପରିଚିତ ହେବାର ଇଚ୍ଛାଟାକୁ ଓଲଟପାଲଟ କରୁକରୁ ସେଇ ଅତୀତର ଆଖି ଦୁଇଟା ଆସି ଆଖିରେ ଆଖି ମିଶାଇଦିଏ ।

ଏମିତି ଉପରେଠା ଅଭ୍ୟାସ ପାଇଁ ସେ କଲେଜରେ ବହୁ ବାଳମାନ ସ୍ତ୍ରୀ ତା ପାଖକୁ ଆଗେଇ ଯାଇ ବନ୍ଧୁତା ଜମାଇଚନ୍ତି । ନୂଆ ବ୍ୟାଚ୍ ପିଲା ଆସିବାକ୍ଷଣି ସେ ଗୋଟିକୁ ଗୋଟି ସମସ୍ତଙ୍କ ସହ ଆଳାପ ଜଣାଇ ଆସିଥିଲେ । କଲେଜରେ ଏଥିପାଇଁ ସେ ବେଶ୍ ପ୍ରିୟ ସମସ୍ତଙ୍କ ଠାରେ । ଏମିତି ଏଇ ସୂତ୍ରରେ ଅମୀତା ସହ ମଧ୍ୟ ସେ ଜବରଦସ୍ତି ପରିଚିତ ହୋଇଥିଲେ, ଆଉ ସେଇ ଅମୀତା ତା ଆଖି ତାଙ୍କ ଆଖିରେ ମିଶାଇ ତାଙ୍କ ମନକୁ ବାନ୍ଧି ଦେଇଥିଲା ।

ଅମୀତା ସେତେବେଳେ ପିଲା । ପିଲା ନୁହେଁତ ଆଉ କଣ ! ଦଶମ ଷ୍ଟାଣ୍ଡାର୍ଡର ଝିଅ । ଅବଶ୍ୟ ଶାରୀରିକ ଗଠନ ଦୃଷ୍ଟିରୁ ବେଶ୍ ହୃଷ୍ଟପୁଷ୍ଟ । ସୁଶୋଭନଙ୍କ ସେଇଟା ଶେଷ ବର୍ଷ, ଦ୍ୱାଦଶ ଷ୍ଟାଣ୍ଡାର୍ଡ । ଏ କଲେଜରେ ଝିଅ ପଢ଼ିବା ମନା; ହେଲେ ଶିକ୍ଷକ ବା କର୍ମଚାରୀଙ୍କ ପିଲାଙ୍କପାଇଁ ଏହା ଲାଗୁ ନୁହେଁ । ପ୍ରିନ୍ସିପାଲଙ୍କ ଝିଅ ହିସାବରେ ଅମୀତାର ବେଶ୍ ନାମ ଥିଲା ।

ସେଦିନ ହଠାତ୍ କଲେଜର ଭାଇସ ପ୍ରିନ୍ସିପାଲ ବଗିଚାରେ ଦୁଇଜଣଙ୍କୁ ଦେଖିଥିଲେ, ଇଂରାଜୀ ସ୍କୁଲରେ ଇଂରାଜୀ ସମାଜର ଅନୁକରଣରେ ଓଠରେ ଓଠ ଲଗାଇ ଅନ୍ତରଙ୍ଗତା ଅନୁଭବ କରିବା ଅବସ୍ଥାରେ । ସେଇଠୁ କଥା ଗଲା ପ୍ରିନ୍ସିପାଲଙ୍କ ପାଖକୁ । ଭୀଷଣ ଅସୁବିଧା କଥା—ନିଜ ଝିଅ ନେଇ ପ୍ରିନସିପାଲ ହଠାତ୍ କୌଣସି ଏକସନ୍ ନେଇ ପାରୁ ନାହାଁନ୍ତି ।

ରାତି ୧୦ଟା ବାଜଲାଣି, ସ୍ୱାମୀ ସ୍ତ୍ରୀ ବ୍ୟସ୍ତତାର ସହ ବସି ଚିନ୍ତାମଗ୍ନ । ଘଧାରୁ ଗାଳି ଶୁଣି ଶୁଣି ସୋଫା ଉପରେ ସେଇଠି ଶୋଇ ପଡ଼ିଚି ଅମୀତା । ଖିଆପିଆ ନାହିଁ । ହଠାତ୍ ବାହାରେ ଖଟ୍ ଖଟ୍ ଆବାଜ୍ । କବାଟ ଖୋଲାଗଲାବେଳକୁ ପଶିଆସିଲେ ସୁଶୋଭନ ।

ପ୍ରିନସିପାଲ ମହାଶୟ ହଠାତ୍ କିଛି କହିପାରିଲେ ନାହିଁ । ସୁଶୋଭନ କିନ୍ତୁ ନିଜଆଡ଼ୁ ଆରମ୍ଭ କଲେ ତାଙ୍କ ବକ୍ତବ୍ୟ । ଯଥା—ସେ ଭଲପାଆନ୍ତି ଅମିତାକୁ ଆଉ ଅମିତା ମଧ୍ୟ ଭଲପାଏ ତାଙ୍କୁ । ଏଣୁ ସେ ଅମିତାକୁ ବିବାହ କରିବାକୁ ଚାହାଁନ୍ତି ।

ଅମିତା ସ୍ୱାଭିତରେ ଉଠି ଉପରେ ଥରି ଠିଆ ହୋଇଚି ମାଙ୍କ ପଛକୁ ! ପ୍ରିନସିପାଲ ମହାଶୟ ବ୍ୟସ୍ତ ହୋଇ ପଡ଼ିଥିଲେ । ବର୍ତ୍ତମାନ କିନ୍ତୁ ରାଗ ସମ୍ବରଣ କରି ନପାରି ହଠାତ୍ ଚିତ୍କାର କରି ଉଠିଲେ ।

ସୁଶୋଭନ ଚେୟାର ଉପରେ ବସି ପଡ଼ିଲେ; ସତେ ଯେପରି ଏସବୁ ଚିତ୍କାର ସଙ୍ଗ ତାଙ୍କର କିଛି ସମ୍ପର୍କ ନାଇଁ । ଶ୍ରୀମତୀ କିନ୍ତୁ ହଠାତ୍ ଆସି ସ୍ୱାମୀଙ୍କର ହାତଧରି ନେଇ ତାଙ୍କୁ ଚୁପ୍ କରାଇଦେଲେ । ପାଟି ଶୁଣିଲେ ପାଖଘରୁ କିଏ ଚାଲିଆସି ପାରନ୍ତି । ଯାହା ବା କଥାଟା କେବଳ ଭାଇସ ପ୍ରିନସିପାଲ ଜାଣିଚନ୍ତି, ସବୁଆଡ଼େ ବ୍ୟାପିଯିବ ।

କିଛି ସମୟର ନୀରବତା ପରେ ହଠାତ୍ ସୁଶୋଭନ ପୁଣି ଆରମ୍ଭ କଲେ "ସାର୍ କୁହନ୍ତୁ ମୁଁ କଣ ଆପଣଂକ ଝିଅର ହାତ ମାଗିପାରେ ?" ତାଙ୍କୁ ଅଧିକ କହିବାକୁ ନ ଦେଇ ଅମିତା ଆଡକୁ ଚାହିଁ କହିଲେ "କୁହ ତମେ ତମର ଇଚ୍ଛା ।" ଅମିତା ଚୁପ୍ ରହିଲା । ସୁଶୋଭନ ପୁଣି କହିଲେ "କୁହ ?" ତଥାପି ନୀରବତା । ସୁଶୋଭନ ଅମିତା ମୁହଁକୁ ଚାହିଁଥିଲେ । ଅମିତାର ବାପା-ମା' ମଧ୍ୟ । ସେ କିନ୍ତୁ ନୀରବ ହୋଇ ଚାହିଁ ରହିଲା । ସୁଶୋଭନ ଆଉ ଅପେକ୍ଷା ନକରି ମୁହଁ ବୁଲାଇ ବାହାରି ଆସିଥିଲେ । ଆଉ ପରଦିନ ଅଫିସକୁ ଯାଇ ପ୍ରିନସିପାଲଙ୍କୁ କ୍ଷମାମାଗି ନିଜର ଅନ୍ୟାନ୍ୟ କାଗଜପତ୍ର ପଠାଇଦେବାକୁ ଅନୁରୋଧ କରି କଲେଜ ଛାଡ଼ି ଚାଲି ଆସିଥିଲେ ।

ଆଜି କାହିଁକି ଏ ଘଟଣା ପୁଣି ସେ ମୂଳରୁ ଶେଷଯାଏ ତାଙ୍କ ମନରେ ଗୋଟେ ସିନେମାର ସିନ୍ ପରି ଆଙ୍କି ହୋଇଗଲା, ସେ ବୁଝି ପାରିଲେନି । ତାପରେ ଅମିତାର ଆଉ ସେ ଖବର ରଖିନାହାନ୍ତି । ବିବାହ ହୋଇଚି, ଯେମିତି ଅନ୍ୟ ରାଜବଂଶରେ ହୁଏ—ଉତ୍ତରପ୍ରଦେଶର କୋଉଗୋଟେ ରାଜ-ବଂଶରେ । ରାଣୀମା ସହର କୋଠିରୁ ଗାଁ ନଅର ଆଉ ପୋଲିଲ ଗୃହକର ତଥା ବନ୍ଧୁବାନ୍ଧବ ମିଳନେଇ ବ୍ୟସ୍ତ, ଆଉ ସୁଶୋଭନ ତାଙ୍କ ବନ୍ଧୁ ଆଉ ଶିକାର ନିଶାର ବ୍ୟସ୍ତତାରୁ ହଠାତ୍ ଆଜି ଲୋକସଭା ପାଇଁ ଭୋଟଯୁଦ୍ଧର ଯୋଦ୍ଧା ।

କାଉଣ୍ଟିଂ ହଲ୍‌ରେ ଭୋଟ ଗଣତି ପାଇଁ ଏଜେଣ୍ଟ ଇତ୍ୟାଦି କାମ ପାର୍ଟି ତରଫରୁ ବ୍ୟବସ୍ଥା ହୋଇଚି । ଏଣୁ ସେଠି ଖାଲି ବସିବା କଥା । ଆଗେଇ ଚାଲିଛି ଗଣତି । ମଝିରେ ମଝିରେ ଖବର ଭୁହାକୁ ଭୁହା ଆସୁଚି ବିଭିନ୍ନ ବୁଥର ଗଣତି ବିଷୟରେ, ଆଉ ବନ୍ଧୁ ଶୁଭକାଙ୍କ୍ଷୀ (ହୁଏତ ଯେଉଁମାନଙ୍କୁ ଆଗରୁ କେବେ ଦେଖିବା ପରି ମନେ ହେଉନି) ଆସି ବଧାଇଦେବା ଆରମ୍ଭ କଲେଣି । ସନ୍ଧ୍ୟାବେଳକୁ ରେଡିଓରେ ଖବର ପ୍ରଚାର ଆରମ୍ଭ ହେଲା—ତିରିଶ ହଜାରରୁ ବେଶୀ ଭୋଟରେ ଆଗୁଆ ସୁଶୋଭନ ସିଂ ମର୍ଦ୍ଦରାଜ ।

ରାତି ୧୨ଟା ଆଗରୁ ଭୋଟଗଣତି ଶେଷ ହେଉନି । ହଠାତ୍ ଏତେବେଳ-ଯାଏ ଥକାଲାଗିଲା । ବୋଧହୁଏ ଜିତିବାର ଆଶଙ୍କା ଦୂର ହେଲାପରେ କ୍ଲାନ୍ତି ଜମିଆସିଚି । ପାର୍ଟି ଲୋକଙ୍କର ବାରଣ ସତ୍ତ୍ୱେ ସେ ଉଠିଲେ, ଟିକେ ବାହାରୁ ବୁଲି ଆସିବାକୁ ।

ହଠାତ୍ କୋଠିରୁ ପିଲାଟିଏ ଆସି ଟେଲିଗ୍ରାମ୍‌ଟିଏ ହାତକୁ ବଢ଼ାଇ ଦେଲା—ଗ୍ରିଟିଂସ୍ ଟେଲିଗ୍ରାମ୍ ।

ଆରମ୍ଭ ହୋଇଗଲା ବୋଧହୁଏ ବଧାଇ ପର୍ବ । ଫଳ ପ୍ରକାଶଟା ବର୍ତ୍ତମାନ ଖାଲି ନପୂମକୁ ଅପେକ୍ଷା ।

ଟେଲିଗ୍ରାମଟା ଖୋଲିଲେ । ସେଇଆ, ଇଲେକ୍‌ସନ୍‌ରେ ଜିତିଥିବାରୁ ବଧାଇ । ପ୍ରେରକର ନାଁଟା ପଢ଼ି ଚମକି ଉଠିଲେ ସୁଶୋଭନ ସିଂ ମର୍ଦ୍ଦରାଜ "ଇଏ କିଏ ସେଇ ଅମିତା ?"



# ଶୁଭାକାଂକ୍ଷୀ

ସିମଳା ଷ୍ଟେସନ ୱେଟିଂରୁମ୍‌ରେ ତିନିଘଣ୍ଟା ଅପେକ୍ଷାରତ ସୁପ୍ରକାଶ ହଠାତ୍ ନିଜକୁ ଆବିଷ୍କାର କଲେ ଗୋଟେ ନୂଆ ସେଲ୍‌ରେ । ଗତଥର ସିମଳା ଯାତ୍ରାର ତିକ୍ତ ଅନୁଭୂତି ହଠାତ୍ ଆସି ତାଙ୍କ ମନକୁ ଭାରାକ୍ରାନ୍ତ କଲା । ସରକାରୀ କାମ ଭିତରେ ଦିଲ୍ଲୀରୁ ଆସିବାବେଳେ ପ୍ରାୟ ଭୁଲି-ଯାଇଥିଲେ ସେ, କାରଣ ବୋଧହୁଏ ରାତିଟାସାରା ଶୋଇ ଶୋଇ ଆସି ସକାଳୁ ଉଠୁ ଉଠୁ ଷ୍ଟେସନ ବାହାରକୁ ଯାଇ କାମର ଭିଡ଼ । କିନ୍ତୁ ଫେରିବା-ବେଳକୁ ହଠାତ୍ ଅହେତୁକ ଟ୍ରେନରେ ଡ଼େରିକରି ବସି ବହିଟିଏ ଓଲଟାଉ ଓଲଟାଉ ମନେ ପଡ଼ିଗଲା ସେଇ ତିକ୍ତ ଅନୁଭୂତି ।

କିଏ, ମାମାଅପାର ପୁଅ ଶ୍ରୀକାନ୍ତ, ଶ୍ରୀକାନ୍ତ ସାଙ୍ଗକୁ ନାନିଅପାର ସୁବ୍ରତ ଆଉ ସୁଜାତା, ତା ସାଙ୍ଗକୁ ତାଙ୍କ ପିଲାଏ ମିଶି ବେଶ୍ ଗୋଟେ ଗ୍ରୁପ୍ ହୋଇଥିଲେ ଦିଲ୍ଲୀରେ । ଛୁଆଗୁଡ଼ା ପ୍ରଥମଥର ପାଇଁ ଆସିଥିଲେ ଦିଲ୍ଲୀ, ଏଣୁ ଜୟପୁର ପରେ ସିମଳା ଥିଲା ନିହାତି ଜରୁରୀ । ହଠାତ୍ ରିଟାର୍ଣ୍ଣ ଟିକେଟ୍ ମିଳିଲାନି, ଏଣୁ ବସ୍‌ରେ ଫେରିବାକୁ ପଡ଼ିଥିଲା ତାଙ୍କୁ ସବୁ । ସକାଳୁ ଆସି ଟିକେଟ୍ ବ୍ୟବସ୍ଥା କରିସାରି ସବୁ ବସି ଜଳଖିଆ ଖାଇ ତରତରରେ ବସ୍‌ରେ ଉଠିବାକୁ ଯାଇ ଦେଖନ୍ତି ମନିବେଗ୍‌ଟି ଷ୍ଟେଷ-

ହୋଇଯାଇଚ । ଭାଗ୍ୟକୁ ଟିକେଟ୍‌ଗୁଡ଼ା ପିଲାଙ୍କ ପାଖରେ ଥିଲା । ଜଳଖିଆ ପଇସା, ପିଲାଙ୍କ ପାଖରୁ ଆଣି ପେମେଣ୍ଟ କରି ସେ ବ୍ୟସ୍ତହୋଇ ବସ୍‌ରେ ଉଠିଲେ । ଫେରିବା ରାସ୍ତାରେ ପିଲାଏ ସବୁ ଖର୍ଚ୍ଚକରି ପକାଇଚନ୍ତି । ସମସ୍ତଙ୍କ ପକେଟ୍ ଖୋଜି ବାହାରିଲା ଚଉଦଟଙ୍କା କ ପନ୍ଦରଟଙ୍କା । ବାଟରେ ଆଉ ଲଞ୍ଚ୍ ଖିଆ ହେଲାନି—ସେଇ ପଇସାରେ କଣସବୁ ପିଲାଏ ଖାଇ କାମ ଚଳାଇନେଲେ ! ଧର୍ମଶାଳାରେ ଯାହାହେଉ କୌଣସି ନେଇ ଘରେ ଅସି ପଇସା ଦିଆଗଲା ।

ଆଜି ହଠାତ୍ ଷ୍ଟେସନରେ ବସି ବହୁତ ଓଲଟାଉ ଓଲଟାଉ ଦୂରରେ ବୁକିଂ ଅଫିସ ପାଖରେ ସେ ଯେଉଁ ଲାଇନ ଲାଗିଚ ସେଇଠି ଲୋକଙ୍କ ଭିଡ ଦେଖି ତାଙ୍କର ସେଇ ତକ୍ତ ଅନୁଭୂତ ମନେ ପଡିଗଲା । ସେ ବ୍ରୀଫ୍‌କେଶ୍‌ଟା ଧରି ଉଠିଗଲେ ସେଇ ଭିଡ଼ ପାଖକୁ ।

ସତେ ଯେପରି ଦୂରରୁ ତାଙ୍କର ମନେହେଲା ସେଇ ଲୋକଟି ଗଲାଥର ବସ୍‌ପାଇଁ ଟିକେଟ୍ କାଟିବାବେଳକୁ ସେ ଯେଉଁ କ୍ୟୁରେ ପିଲାଙ୍କୁ ଛାଡ଼ିକରି ତାଙ୍କର ପାଖରେ ଛିଡ଼ା ହୋଇଥିଲେ, ଏଇ ଲୋକଟା ସେଠି ବ୍ୟସ୍ତହୋଇ ଘୁରି ବୁଲୁଥିଲା, ଆଉ ସେଇ ବ୍ୟସ୍ତତାରେ ତାଙ୍କ ପାଖରେ ଘସିହୋଇ ଯିବାଆସିବା କରିବାର ତାଙ୍କର ମନେପଡ଼ିଗଲା ।

ହଠାତ୍ ସେ କ୍ରୋଧରେ ଜର୍ଜରିତ ହୋଇ ଉଠିଲେ । ଭାବିଲେ— କଲାର ଧରି ଦୁଇଟା ଠାଏ ଠାଏ ବସାଇଦେବେକି—ଠିକ୍ ସିନେମା ଷ୍ଟାଇଲ୍‌ରେ, ପଡିଗଲା ବେଳକୁ ଗୋଟେ ଜାକ୍ । ହାତ ତାଙ୍କର ଗଲୁକରି ଉଠିଲା । ନିଜକୁ ସମ୍ବରଣ କରିନେଲେ ସେ । ନା ବର୍ତ୍ତମାନ ତ ହଠାତ୍ ତାର କିଛି ଦୋଷନାହିଁ । ଲୋକେ କଣ ତାକୁ ସାପୋର୍ଟ କରିବେ ? ବରଂ ନିଜକୁ ଲଜ୍ଜିତ ହେବାକୁ ପଡ଼ିବ । ତଥାପି ଖାଲି ଛାଡ଼ିଦିଆଯାଇ- ନପାରେ । କିଛିଗୋଟେ କରିବାକୁ ହେବ । ହଠାତ୍ ତାଂକ ମନକୁ

ଗୋଟେ ବୃଦ୍ଧି ଦେଖାଗଲା । ଯଦି ବର୍ତ୍ତମାନ ପର୍ଯ୍ୟନ୍ତ ତା କୋଟ ପକେଟ୍‌ରେ ଗଳାଇ ଦେଇ ପିଟିବା ଆରମ୍ଭ କରନ୍ତି ତାହେଲେ ତ ପବ୍ଲିକ୍ ସାପୋର୍ଟ ମିଳିବ । କେଜାଣି କାହିଁକି ଗତଥରର ଉକ୍ତିତାର ଟର୍ଣ୍ଣ ବର୍ତ୍ତମାନ ତାଂକ କଥା ଘା'ରେ ଲୁଣପରି ଜର୍ଜରିତ ହୋଇ ଉଠିଲା । ପରିଣତ ବୟସରେ ଏପରି ଏକ ଚପଳତା; ତାଙ୍କୁ ଜଣାଗଲା ସତେ ଯେପରି ଦୋଷୀଙ୍କୁ ଦଣ୍ଡଦେବା ତାଂକର କର୍ତ୍ତବ୍ୟ । ପର୍ଯ୍ୟନ୍ତି ଉର୍ତ୍ତିକରିବାକୁ ଯାଉଁ ଯାଉଁ ଲୋକଟି ତାଂକ ହାତକୁ ଧରି ପକାଇଲା । ଅନ୍ୟ କେହି ଦେଖିବା ପୂର୍ବରୁ ତାଙ୍କ ମୁହଁକୁ ଚାହିଁ କହିଲା କଣ କରିବାକୁ ଚାହାନ୍ତି ଆପଣ ?"

ହଠାତ୍ କିଂକର୍ତ୍ତବ୍ୟବିମୁଢ଼ ହୋଇଗଲେ ସୁପ୍ରକାଶ । ନିଜକୁ ସମ୍ଭାଳି ନପାରି ଚିତ୍କାର କରି ଉଠିଲେ—"ବଦମାସ୍ ଚୋର, ପିକ୍‌ପକେଟ୍ ।" ଏହା କହୁ କହୁ ସେ ଲୋକଟିର କୋଟକୁ ସାମ୍ନାରେ ଜାବୁଡ଼ି ଧରି ବ୍ରିଫକେଶ୍‌ଟା ଟେକ ମାରିବାକୁ ଉଦ୍ୟତ ହୋଇଗଲେ ।

ଲୋକଟି ଶାନ୍ତ ଏବଂ ଧୀର ଗଳାରେ କହିଲା 'କଣ ପାଗଳନା କଣ ? ଏହା କହି ସେ ନିଜ କୋଟଟି ସୁପ୍ରକାଶ ହାତରୁ ଛଡ଼ାଇ ନେଇ ଗମ୍ଭୀର ହୋଇ ଚାଲିପଡ଼ିଲା । ସତେ ଯେପରି ଗୋଟେ ପାଗଳା ବା ମଦୁଆର ହଠାତ୍ ଆକ୍ରମଣରୁ ଭଦ୍ରଲୋକ ନିଜକୁ ରକ୍ଷାକରି ଚାଲିଗଲେ ।

ସୁପ୍ରକାଶ ଆଡ଼କୁ ସମସ୍ତେ ତଟସ୍ଥ ହୋଇ ଚାହିଁରହିଲେ । ବେଶ-ପୋଷାକରୁ ପାଗଳ ଭଳିତ ଜଣାପଡ଼ୁ ନଥିଲା । ତୁଏତ 'ସକାଳୁ ସକାଳୁ ମଦନିଶା ଚଢ଼ିଯାଇଚି' ଭାବି ମୁହଁରେ ତାଚ୍ଛଲ୍ୟ ହସ ହସି ନିଜକାମରେ ମନଦେଲେ । ମହିରଗରୁ ଯାଇ କ୍ଲାନ୍ତିରରେ ପଡିଲେ ସୁପ୍ରକାଶ । ମୁହଁ ଦେଖାଇବାକୁ ଲଜ୍ଜା ଲାଗିଲା । ହଠାତ୍ ଶୁଣାଗଲା ଷ୍ଟେସନକୁ ଟ୍ରେନ ପଶିବାର ଶବ୍ଦ । ତା' ସହ ସମସ୍ତେ ବ୍ୟସ୍ତ ହୋଇଉଠିଲେ । ଏହି ସୁଯୋଗରେ ସେ ମଧ୍ୟ ଟ୍ରେନ ଆଡ଼କୁ ମୁହାଁଇଲେ ।

ନିଜ ଡବାରେ ଉଠି ଝରକାଟା ଟେକଦେଇ ସେ ହଠାତ୍ ଯାଇ ବସିପଡ଼ିଲେ । ଏବେବି ମୁଣ୍ଡ ଆଉ କାନମୂଳ ତାଙ୍କର ଗରମ ଲାଗୁଥିଲା । ସେ ଉଠିଯାଇ ମୁହଁ ଧୋଇନେଲେ ଓ ଚା କପଟା ଖାଉ ଖାଉ ପୁଣି ଟ୍ରେନ ଛାଡ଼ିବାବେଳେ ଡବା ଭିତରକୁ ଉଠିବାବେଳକୁ ଦେଖିଲେ ତାଙ୍କର ଡବାରେ ଉଠୁଛି ଆଉ ପାଖ ଡୋର୍ ଦେଇ ସେଇ ଲୋକଟା । ସେ ଯାଇ ନିଜ ଜାଗାରେ ତାକୁ ମୁହଁ ଲୁଚାଇ ବସିପଡ଼ିଲେ । ଲୋକଟା ଏଇ ଆଡ଼କୁ ଆସିବାର ଦେଖି ସେ ତାକୁ ନ ଦେଖିଲା ପରି ଝରକା ଆଡ଼କୁ ଅନାଇ ରହିଲେ । ଟ୍ରେନ ଛାଡ଼ିଦେଲା ।

ସେ ଭିତରକୁ ଅନାଇ ଦେଖିଲେ ଲୋକଟା ପୁଣି ପଛପାଖ ଦେଇ ଓହ୍ଲାଇଗଲା । ଟ୍ରେନ ପାଖରେ ଚାଲିବା ଚାଲିବା ହୋଇ ତାଙ୍କର ଝରକା-ପାଖକୁ ଆସି ଲୋକଟି କହିଲା—

'ସେଦିନ ମୁଁ ଇଚ୍ଛାକରିଥିଲେ ଟିକେଟ୍ କିଣିବା ପୂର୍ବରୁ ଆପଣଙ୍କ ମନିବେଗ୍‌ଟା ନେଇ ପାରିଥାଆନ୍ତି—ହେଲେ ଆପଣଙ୍କ ସହ ପିଲାପିଲି ଥିଲେ, ଏଣୁ ମୁଁ ଟିକେଟ୍ କିଣିବା ପର୍ଯ୍ୟନ୍ତ ଅପେକ୍ଷା କଲି । ସେଥିପାଇଁ ମୋତେ ବରଂ ଆପଣ ଧନ୍ୟବାଦ ଦେବା କଥା ।'

ଏତକ କହୁ କହୁ ଟ୍ରେନର ବେଗ ବଢ଼ିଯାଇଥିଲା । ଲୋକଟା ହାତଟେକି ବାଏ ବାଏ କଲାବେଳକୁ ତା ହାତରେ ବ୍ରିଫ୍‌କେଶ୍‌ଟା ଦେଖି ସୁପ୍ରକାଶ ନିଜ ବ୍ରିଫ୍‌କେଶ୍‌ଟାକୁ ଖୋଜି ବୁଲୁଥିଲେ ।



# ଧନଜନ ଗୋପଲକ୍ଷ୍ମୀ

ବ୍ରଜମୋହନ ବହୁବର୍ଷ ପରେ ସେଇ ପୁରୁଣା ଷ୍ଟେସନ୍‌ର ଓ୍ୱେଟିଂରୁମ୍ ଦେଇ ବାହାରକୁ ଆସି ରିକ୍‌ସାରେ ବସିଲେ । ସୁଟ୍‌କେଶଟା ଗୋଡ଼ ପାଖରୁ ଉପରକୁ ଉଠାଇ ନେଇ ଖୋଲ କାର୍ଡ଼ ଖଣ୍ଡକରୁ ଠିକଣାଟା ପଢ଼ି ପଢ଼ି ରିକ୍‌ସାବାଲା କହିଲା, ତାକୁ ଜଣାଅଛି—ସେ ଠିକ୍ ପହଞ୍ଚାଇ ଦେବ । ରିକ୍‌ସା ଷ୍ଟେସନକୁ ପଛରେ ପକାଇ ଆଗକୁ ଗଡ଼ିଚାଲିଲା—କିନ୍ତୁ ବ୍ରଜମୋହନଙ୍କ ମନ ଫେରି ଚାଲିଥିଲା ପଛକୁ ପଛକୁ । ବହୁବର୍ଷ ପରେ ହଠାତ୍ ମଦନମୋହନବାବୁଙ୍କର ହାତଲେଖା ହଳଦ ଛପା ନିମନ୍ତ୍ରଣ ପତ୍ର ନପାଇଥିଲେ ସେ ହୁଏତ ଆସି ନଥାନ୍ତେ । ଖାଲି ଗ୍ରିଟିଙ୍ଗ୍‌ସ ଟେଲି-ଗ୍ରାମଟାଏ ପଠାଇ ଦେଇଥାଆନ୍ତେ । କିନ୍ତୁ ସେଇ ମଦନମୋହନବାବୁଙ୍କ ହାତଲେଖା ହଳଦର ଆକର୍ଷଣ ଏଡ଼ାଇ ପାରିଲେ ନାହିଁ । ଯନ୍ଦର ପ୍ୟା ଭିତରେ ପ୍ରାପ୍ତ କୋଡ଼ିଏଟା ବର୍ଷ ବିତିଯାଇଛି; କୋଡ଼ିଏ କାହିଁକି, ଆହୁରି ବେଶୀ ହେବ । ସେ ବର୍ଷ ତାଙ୍କ ପ୍ରମୋସନ ନ ହୋଇଥିଲେ ହୁଏତ ଆହୁରି କେତେ ବର୍ଷ ସେ ରହିଥାଆନ୍ତେ ସେଇ ଶାନ୍ତ ମଧୁର ଗାଁ ପରିବେଶରେ; ଜମିଦାର ମଦନମୋହନବାବୁଙ୍କ କୋଠାର ଗୋଟିଏ ଅଂଶରେ ତାଙ୍କର ଏକପ୍ରକାର ଅତି ନିଜର ଲୋକପରି ।

ହଁ ନଜର ନୁହେଁ ଆଉ କଅଣ ? ଜମି ଜମାର ସବୁ କିଛି ବ୍ୟବସ୍ଥା ତାଙ୍କର ହାତରେ । ନଅବର୍ଷ ତଳେ ବ୍ଲକର ଏଗ୍ରିକାଲ୍ଚରର ଏକ୍ସଟେନ୍ସନ୍ ଅଫିସର ହୋଇ ଆସି ସେ ତାଙ୍କର ପଛପାଖ ଧାଡ଼ିବନ୍ଧା ଘରଗୁଡ଼ିକରୁ ଖଣ୍ଡେ ନେଇ ଆସ୍ଥାନ ଜମାଇଥିଲେ । ଗାଁରେ ରହିବାର ସୁବିଧା ନଥିଲା । ଏଣୁ ନୂଆ ବାହାହୋଇ ସ୍ତ୍ରୀଙ୍କୁ ମଧ୍ୟ ସେ ସାଙ୍ଗରେ ସେତେବେଳେ ଆଣିବାକୁ ବାଧ ହୋଇଥିଲେ ସେଇ ଘରକୁ ଆଉ ଧୀରେ ଧୀରେ ଏଇ ଘରଟାର ଅସୁବିଧା ମାଉସୀଙ୍କ ପାଖରେ କହିବାକୁ ଯାଇ ସ୍ତ୍ରୀ ତାଙ୍କର ଜମେଇ ଦେଇଥିଲେ ସମ୍ପର୍କ । ସେଇ ସମ୍ପର୍କ ଧୀରେ ଧୀରେ ବଢ଼ି ତାଙ୍କୁ ଜାଗା ଦେଇଥିଲା, ଭିତର ପୁରରେ । ଆଉ ସେ ନିଜେ ତାଙ୍କ ହାତଗୃଷର ସବୁ ଘର ଆନନ୍ଦର ସହ ଗ୍ରହଣ କରି ନେଇଥିଲେ । ତା ସାଙ୍ଗକୁ ଷ୍ଟେଟ ବଡ଼ ହୋଇ ୮ଟା ସାରା ପିଲାଙ୍କର ପ୍ରାୟ ପଢ଼ାପଢ଼ି ଆରମ୍ଭ ତାଙ୍କରିଠାରେ । ପ୍ରଥମଛ'ଟି ଝିଅଙ୍କୁ ସ୍କୁଲର ୩ୟ ଶ୍ରେଣୀଠାରୁ ୮ମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ପାଠ ତାଙ୍କୁ ପଢ଼ାଇବାକୁ ହେଉଥିଲା । ଆଜି ପୁଅ ଦିଟା ଛୋଟ, ସ୍କୁଲ୍ ଯିବା ବୟସ ହେଲେବି ପଢ଼ା ଆରମ୍ଭ କରି ନଥିଲେ ସେତେବେଳେ । ପରେ ତାଙ୍କୁ ମଧ୍ୟ ଅ ଆ ଆରମ୍ଭ କରାଇଥିଲେ ସେ ।

ଆଜି ବଡ଼ଝିଅ ଅନୁପମାର ଝିଅ ବାହାଘର । ଅନୁପମା ବାହାଘର ତାଙ୍କ ରହଣି ଭିତରେ ହୋଇଥିଲା । ଏଣୁ ତା ଝିଅ ବାହାଘରର ନିମନ୍ତ୍ରଣ ପାଇ ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ଆସିବାର ଇଚ୍ଛା ଥିଲେବି ସଂସାର ଛାଡ଼ି ଆସିବାଟା ସୁବିଧା ହେଲାନି । ବ୍ରଜମୋହନ ସ୍ତ୍ରୀଙ୍କୁ ନେଇ ଯିବାକୁ ଜିଦ୍‌କଲେ । କାରଣ ମଦନମୋହନବାବୁ ବା ତାଙ୍କ ସ୍ତ୍ରୀଙ୍କୁ ବୁଝାଇବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ସ୍ତ୍ରୀ ପୁରୁଣା କଥା ମନେ ପକାଇ କହିଲେ— "କହିବି, ଆପଣ ପରା ସେଥର ଆପଣଙ୍କ ଭଉଣୀର ଝିଅ ବାହାଘରକୁ ନ ଯାଇପାରି ମଉସାଙ୍କୁ ପଠାଇଥିଲେ । ସାନ ଛୁଆ ଦୁଇଟାଙ୍କୁ ନେଇ ଆପଣ ଯାଇପାରିଲେ କି ?"

କାଲି ବାହାଘର । ଆଜି ପ୍ରାୟ ସବୁ ଝିଅ-ଜୋଇଁ ଆସି ପହଞ୍ଚି-ଗଲେଣି । ସାନଗୁଡ଼ା ବ୍ରଜମୋହନବାବୁଙ୍କୁ ମନେପକାଇ ପାରିଲେ ନାହିଁ, ହେଲେ ଅନୁପମା, ନିରୁପମା, ସୁରମା ବସି ଭାଇଭଉଣୀଙ୍କ ଗହଣରେ ମାଷ୍ଟରଙ୍କ ସହ ଅନ୍ତରରେ ପରସ୍ପରର ଗୁଣଦୋଷ କହି ବେଶ୍ ଉପଭୋଗର ସନ୍ଧ୍ୟାଟିଏ ରଚନା କରିଥିଲେ—ଯ୍ୟ'ପରରେ ଜାଣିବାକୁ ପାଇଲେ ଗୋଟିକ ପରେ ଗୋଟିଏ ଜୋଇଁଙ୍କ ଅବସ୍ଥା । ବଡ଼ଜଣେକ ବି: ଡ଼ି: ଓ: ଥିଲେ ବୋଲି ସେ ଆଗରୁ ଜାଣିଥିଲେ । ବାବୁ ସ୍ବାଭିତରେ ଡେ଼ପୁଟି ସେକ୍ରେଟାରୀ ହୋଇ ଭୁବନେଶ୍ୱରରେ । ତାଙ୍କର ବାହାଘର ହୋଇଥିଲା ଅନୁପମା ସହ । ସେତେବେଳେ ଏଇ ଗାଁ ବ୍ଲକର ବି: ଡ଼ି: ଓ. ସେ । ମା ବାପା ନାହିଁ, ଏଣୁ ମଦନମୋହନଙ୍କ ଘର ବି: ଡ଼ି: ଓ: ସାହେବଙ୍କ ନଜରର ହୋଇଯାଇଥିଲା । ସେଥିପାଇଁ ଆଜି ବଡ଼ଝିଅ ବାହାଘରଟା ଏଇଠି ଅଜାଘରେ । ବନ୍ଧୁବାନ୍ଧବମାନେ ବାଧ କରୁଥିଲେ ପୁରୀରେ ବାହାଘର କରିବାକୁ; ବରଘର ବ୍ୟସ୍ତ କରୁଥିଲେ ଭୁବନେଶ୍ୱରରେ କରିବାକୁ । କିନ୍ତୁ ତାଙ୍କୁ ଏସବୁ ସୁବିଧା ହେଲାନି, କାରଣ ଭୁବନେଶ୍ୱର ଘରଟା ଭଡ଼ା ଲାଗି-ଯିବ ଓ ପୁରୀ ଘରେ ଅଧା ସହିତ ନିଜ ପାଇଁ ରଖିଚନ୍ତି ବାକି ଅଧିକ ଭଡ଼ା ।

ଦ୍ୱିତୀୟ ନିରୁପମାର ସ୍ୱାମୀ ଏବେ ହେଲେଣି ଡିଷ୍ଟ୍ରିକ୍ଟ ସଏଲ କନ୍‌ଜାର-ଭେସନ ଅଫିସର । ଚାକିରି ଆରମ୍ଭ ସେଇ ଏଗ୍ରିକଲଚର ଡ଼ିପାର୍ଟମେଣ୍ଟର ଓଭରସିଅରରୁ । ଫିଲଡ୍‌ମେନରୁ ଓଭରସିଅର । ପ୍ରମୋସନ ନହୋଇ କେତେଜଣ ରହିଯାଇଥିଲେ ଡ଼ିପାର୍ଟମେଣ୍ଟରେ । କିନ୍ତୁ ସେତେବେଳେ ଯାହେଉ ମନ୍ତ୍ରୀମଣ୍ଡଳ ଯିବା ଆସିବା ବେଳ । ବହୁ କଷ୍ଟରେ ମନ୍ତ୍ରୀଙ୍କୁ ସମସ୍ତେ ଗୁହାରିକରି ଥୋକଟେ ପକାଇଲାରୁ ସମସ୍ତଙ୍କୁ ଗୋଟେ ଥରରେ ସ୍ପେସାଲ ଗେଜେଟେଡ୍ କରି ଦେଲେ ମନ୍ତ୍ରୀ ମହୋଦୟ । ବର୍ତ୍ତମାନ ଧାପେ ଧାପେ ଉଠି କ୍ଲାସ ଓ୍ୟାନ୍ ହେଲେଣି । ଗାଁ ଘରଟା ପକ୍କା କରୁ

ବଦଳି କରିଥିଲେ ବହୁଆଗରୁ । ଭୁବନେଶ୍ୱରରେ ହାଉସିଂବୋର୍ଡ ଘରେ ଅଛନ୍ତି ବର୍ତ୍ତମାନ । ଏବେ ଢେଙ୍କାନାଳରେ ଘରକରି ଟାୟାର କମ୍ପାନୀକୁ ଭଡ଼ା ଲଗାଇଛନ୍ତି ।

ତୃତୀୟ ଜଣଙ୍କ ସ୍ୱାମୀ ବର୍ତ୍ତମାନ ଏସ୍: ଡ: ଓ: ଇରିଗେସନ୍‌ରେ । ସେବ ଓଭରସିଅର ଥିଲାବେଳେ ଏଇ ବ୍ଲକରେ ବାହା ହୋଇଥିଲେ । ଏବେ ତାଙ୍କର ଗାଡ଼ି ଆଉ ଟ୍ରକର ବାକର ସବୁ ଏଇଠି ଖଟୁଛନ୍ତି । ଘର ସେ କେଉଁଠି ହେଲେ କରି ନାହାନ୍ତି ଏ ପର୍ଯ୍ୟନ୍ତ । ହେଲେ ଖାଲି ଭୁବନେଶ୍ୱରରେ ୪ଟା ପ୍ଲଟ; ପୁରୀ, କଟକ, ବ୍ରହ୍ମପୁର, ଯେଉଁଠି ପୋଷ୍ଟିଙ୍ଗ୍ ସେଠି ଗୋଟେ ଗୋଟେ ପ୍ଲଟ । ଘର କରିବାକୁ ସୁବିଧା ଯୁଟୁନି ଶୁଣି ବ୍ରଜମୋହନ ଭାବିଲେ ଓସ୍ତାଦ ପିଲା ନିଶ୍ଚୟ ।

ବ୍ରଜମୋହନ ଆହୁରି ଭାବୁଥିଲେ ଓସ୍ତାଦ ତ କାହାରି କମନୁହେଁ ! ତେବେ ଯାହାହେଉ ଝିଅସବୁ ଆନନ୍ଦରେ ଅଛନ୍ତି । ମଉସା ଓ ମାଉସୀଙ୍କ ସେଇ ଗୋଟିଏ ଚିନ୍ତା "ମୋ ଝିଅଙ୍କୁ ଧନଜନ ଗୋପଲକ୍ଷ୍ମୀ"ର ଅଭାବ ନହେଉ । ପଦଟା ମନେ ପଡ଼ିଲା କ୍ଷଣି ବ୍ରଜମୋହନଙ୍କ ମନେପଡ଼ିଗଲା, ପ୍ରତ୍ୟେକଦିନ ସନ୍ଧ୍ୟାରେ ଝିଅମାନଙ୍କର ସେଇ ପ୍ରାର୍ଥନାର ପଦଟା । ଠାକୁରଘରେ ସନ୍ଧ୍ୟାରେ ମଉସା ମାଉସୀ ଏବଂ ବ୍ରଜମୋହନଙ୍କ ପିଲାପିଲି ସମସ୍ତେ ମିଶି ପ୍ରାର୍ଥନା କରିବା ଏକ ନିତିଦିନିଆ ରୁଟିନ୍ । ଆଜି ତା ଭିତରୁ ହଠାତ୍ ବ୍ରଜମୋହନଙ୍କ ମନେପଡ଼ିଲା ଏଇ ପଦକ— "ମୋର ଧନଜନ ଲୋଡ଼ାନାହିଁ ହେ ।"

ବ୍ରଜମୋହନ ମନେ ପକାଇଲେ । ସେଇଟା କିଏ ଥିଲା ଅନିମା ? ହିଁ ଅନିମା ତ; ବେଶ୍ ସମସ୍ତଙ୍କ ଠାରୁ ସୁନ୍ଦରୀ ଥିଲା ସେହି ଝିଅଟି । ସେ ବୋଧହୁଏ ସେତେବେଳେ ୪ର୍ଥରେ ପଢୁଥିଲା । ମଉସାଙ୍କ ସହ ସେ ନିଜେ

ଅନୁମାନ କଲେ ଝିଅଟା ପ୍ରାର୍ଥନା କଲାବେଳେ ଏଇ ପଦଟାରୁ 'ଧନ' ଶବ୍ଦଟା ଗାଉନି । ଦୁଇ ତିନି ଦିନ ଦୁଇଜଣ ମିଶି ଲକ୍ଷ୍ୟକଲେ ଆରେ ସତରେ ଝିଅଟା ଠିକ୍ ଏଇ ପଦ ପଢ଼ୁଥିବା ବେଳକୁ 'ଧନ' ଶବ୍ଦଟା ଗାଉନି । ଛାଡ଼ିଦେଇ ଯାଉଛି ।

ସେଦିନ ପ୍ରାର୍ଥନା ପର୍ବ ପରେ ମଉସା ଧରିଲେ ଅନିମାକୁ । "କିରେ ତୁ କଣ ଗାଉଗାଉ 'ଧନ' ଶବ୍ଦଟା ଛାଡ଼ିଯାଉଚୁ; କଥା କଣ ?" ଅନିମା ଟିକେ ଲାଜେଇଗଲା ସତ; ହେଲେ ସଫା ସଫା ଉତ୍ତର ଦେଲା—"ମୁଁ ମିଛ କାହିଁକି ଠାକୁରଙ୍କୁ କହିବି । ମୋର ତ ଧନ ଦରକାର ।" ସମସ୍ତଙ୍କର ହସ ପର୍ବ ପରେ ମଉସା ଖୁବ୍ ଗମ୍ଭୀର ହୋଇ କହିଲେ—"ସତକଥା, ଠାକୁରଙ୍କ ସାମ୍ନାରେ ଏଇ ଭଣ୍ଡାମି କାହିଁକି ?" ପଚାରିଲେ—"ମାଉସୀ ! ଅନିମା ଆସିନାହିଁକି ? ତାକୁ ତ ଦେଖୁନି ।" ମାଉସୀ କହିଲେ—"ତା କଥା କହନାହିଁ ବାପା, ବିଚାରୀ ସେଇଟା ଅଭାଗିନୀ ।" ଟିକଏ ରହି କହିଲେ "ଦେଖି ଦେଖି ବ୍ୟାଙ୍କ ଅଫିସରଟାଏ ବାହା ଦେଇଥିଲୁ—ବିଚାରୀ ଏବେ ଆସାମରେ ଅଛି । ଏବେ ଏବେ ତା ଶାଶୁ ମରିଗଲେ । ଗୋଟେ ପରେ ଗୋଟେ ନଣନ୍ଦ ବାହାଘର, ତା ସାଙ୍ଗକୁ ଦିଅର ଦିଟା ପଢ଼ୁଚନ୍ତି । ଏଣେ ପଛକୁ ପଛ ତିନିଟା ଛୁଆ । ବିଚାରୀ ଏତେବାଟରୁ ପଇସା ଛାଡ଼ି ଆସିପାରିବନି ।" ଶୁଖିଗଲା ତାଙ୍କ ମୁହଁ । ବ୍ରଜମୋହନ ଚାହିଁଲେ ମଉସାଙ୍କ ମୁହଁକୁ । ତାଙ୍କ ଭଙ୍ଗିରୁ ସେ ଅନୁଭବ କଲେ ସେ ଯେମିତି ସେଇ ସନ୍ଧ୍ୟାରେ ଅନିମାର ସ୍ପଷ୍ଟ ଉତ୍ତରଟାକୁ ମନେ ମନେ ଦୋହରାଇ ହେଉଚନ୍ତି, ଆଉ ଭାବୁଚନ୍ତି ସେଇ ଗୋଟିଏ କଥା ଯେଉଁଟା ବ୍ରଜମୋହନ ମଧ୍ୟ ଭାବୁଚନ୍ତି ।

# ଚେତନା

ଡ଼ାଃ ନରେଶ ଚନ୍ଦ୍ରଙ୍କ ନିଦ ଭାଙ୍ଗିଗଲା ପାଖଆଖରେ ବସିଥିବା ସହଯାତ୍ରୀମାନଙ୍କ ବ୍ୟସ୍ତତା ଆଉ ସିଟ୍‌ବେଲ୍‌ଟର ଟଣା ଓଟରର ଶବ୍ଦରେ । ବେଶ୍ ନିଦଟା ଲାଗି ଯାଇଥିଲା । ଏଇ ଭୋର ଡ଼ିପାର୍ଚ୍ଚର ଫ୍ଲାଇଟ୍ ଗୁଡ଼ାକ ବଡ଼ ଅସୁବିଧାରେ ପକାଏ । ରାତିସାରା ଅନିଦ୍ରା, ସେଥିରେ ପୁଣି ତାଙ୍କୁ ଆଜି ଗୋଟେ ଫ୍ଲାଇଟ୍ ନେଇ ଆସିବାକୁ ପଡ଼ିଥିଲା ନ୍ୟୁୟର୍କ । ଏଣୁ ବେଶ୍ ନିଘୋଡ଼ ନିଦଟା ବାରମ୍ବାର ମାଡ଼ିଆସୁଥିଲା—ଖାଲି ଖିଆପିଆର ସମୟଟା ଛୁଡ଼ି ବେଶ୍ ରେଷ୍ଟ ପାଇଗଲେ । କାଚ ଭିତର ଦେଇ ତଳକୁ ଚାହିଁବାକୁ ଚେଷ୍ଟା କଲେ ସେ, ମେଘଭିତର ଦେଇ କିଛି ଦେଖାଯାଉନି । ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ ସେ ହୁଏତ ବର୍ତ୍ତମାନ ରାଜସ୍ଥାନ ଉପରେ ଦେଇ ଯାଉଥିବେ । ରାଜସ୍ଥାନ କଥା ଭାବୁ ଭାବୁ ହଠାତ୍ ନିଜ ଦେଶ ଉପରେ ନିଜର ଅବସ୍ଥାନ ଅନୁମାନ କରି ତାଙ୍କ ରୋମାଞ୍ଚ ଅନୁଭୂତ ହେଲା । କେତେବର୍ଷ ପରେ ଆଜି ସେ ଆସୁଚନ୍ତି ଭାରତକୁ । ପ୍ରାୟ ୧୦ ବର୍ଷ—ହଁ ଠିକ୍ ୧୦ ବର୍ଷ ତଳେ ବଡ଼ବାପା ମାରି ଗଲାପରେ ସେ ଆସିଥିଲେ ଶୁଦ୍ଧିକାମ ବେଳକୁ । ସେଇ ମୂର୍ତ୍ତିଟି ଗଲାପରେ ଆଉ କିଏବା ଅଛି ତାଙ୍କୁ ଟାଣିବାକୁ । ବାକି ଯେତେ ଖାଲି ତାଙ୍କ ଅର୍ଥ ଓ ସମ୍ମାନର ବନ୍ଧୁବାନ୍ଧବ । ବଡ଼ବାପାଙ୍କ ଛଡ଼ା ପିଲାଦିନୁ ସେ କାହାରି ତ୍ୟାଗ ବା ଆଦର୍ଶ

ଅନୁଭବ କରିନାହାନ୍ତି ତାଙ୍କ ଜୀବନ ଗଢ଼ିବାରେ । ବାପା-ମାଙ୍କୁ ତାଙ୍କର ମନେନାହିଁ । ସେମାନେ ମଧ୍ୟ ନିଶ୍ଚୟ ବଡ଼ଭାଇଙ୍କୁ ତାଙ୍କର ପରି ଭଗବାନ ସ୍ଥାନରେ ରଖିଥିବେ, କାରଣ ୧୨ ବର୍ଷର ତଫାତ୍ ବଡଭାଇ ସାନଭାଇ ଭିତରେ । ପଢ଼ାଠାରୁ ଆରମ୍ଭକରି ସବୁ ଭାର ସାନଭାଇର ନେଇଥିଲେ ଏଇ ବଡବାପା । ଆଜି ଶୁଭକ୍ଷଣରେ ପ୍ରଥମ ଶୁଭାବର୍ତ୍ତନ ପଥରେ ଟ୍ରେନ ଏକ୍ସିଡେଣ୍ଟରୁ ଆସି ଶିଶୁ ପରେଶଚନ୍ଦ୍ରଙ୍କୁ କୋଳରେ ନେଇ ସାନଭାଇ ଆଉ ବୋହୂର ସତ୍କାର ଶେଷକରି ବଡବାପା ଯେ ଫେରି ଯାଇଥିଲେ ତାଙ୍କର କୋଳରୁ ପରେଶଚନ୍ଦ୍ର ବର୍ତ୍ତମାନ ସୁଦ୍ଧା ଓହ୍ଲାଇ ପାରି ନାହାନ୍ତି ।

ବଡ଼ବାପାଙ୍କ ନିଜ ପୁଅଝିଅ ସେତେବେଳକୁ ବଡ଼ ହୋଇ କଲେଜରେ ପଢ଼ୁଥିଲେ । ଏଣୁ ହଠାତ୍ ଏକ ଶିଶୁ ଘରେ ସମସ୍ତଙ୍କୁ ଅସୁବିଧାରେ ପକାଇଥିଲା । ବଡମା'ତ ଦୂର୍ଦୂର୍ ମାର୍ମାର୍ ଆରମ୍ଭ କରିଦେଲେ, କିନ୍ତୁ ବଡବାପାଙ୍କ କୋଳର ଆଶ୍ରୟ, ତାଙ୍କୁ ଶୈଶବରୁ କୈଶୋର ଓ ଯୌବନ ପର୍ଯ୍ୟନ୍ତ ଖାଲି ସୁସ୍ଥ ଭାବରେ ନୁହେଁ ସୁମଣିଷ କରି ଗଠନକରିବାର ଏକମାତ୍ର ପୁଞ୍ଜି ହୋଇ ରହିଥିଲା । ଭାଇମାନେ ଅର୍ଥ ଆଉ ମା'ଙ୍କର ଅନ୍ଧ ସ୍ନେହରେ ଅମଣିଷ ହୋଇ ସଂସାରରେ ମଉଜ ମଜ୍‌ଲିସ୍‌ରେ ମାତି-ଥିବାବେଳେ ବଡ଼ବାପାଙ୍କର ଗର୍ବ, ପରେଶ ଚନ୍ଦ୍ର ମେଡିକାଲ କଲେଜରୁ ଗୃଣ୍ଠା ଗୋଲ୍ଡମେଡ଼ାଲ ନେଇ ମେଧାବୀ ବୃତ୍ତି ପାଇ ଇଂଲଣ୍ଡରେ ପଢ଼ିବାକୁ ଯିବାରେ ସେଇ ଗୋଟିଏ ଆଶୀର୍ବାଦ ଥିଲା 'ବଡବାପାଙ୍କ କୋଳ' । ଇଂଲଣ୍ଡରେ ପଢ଼ାପାରି କିଛିଦିନ ଇଣ୍ଟର୍ଣ୍ଣି କଲାବେଳେ ବଡ଼ବାପାଙ୍କର ଦଶାହ କାମକୁ ଆସି ଫେରିଯିବା ବେଳେ ତାଙ୍କର 'ଅସ୍ଥି' ସହ ସେ ବୋଧହୁଏ ସେଇ 'କୋଳ'ଟି ନେଇ ଯାଇଥିଲେ ସାଙ୍ଗରେ । ଏଣୁ ଫେରିବାର ଆନନ୍ଦ ବା ଉତ୍ସାହ ଜନ୍ମି ନଥିଲା ସ୍ୱଦେଶରୁ । ଧର୍ମାନ୍ଧ ହୋଇ ସେ ଅସ୍ଥି ବିସର୍ଜନ କରିପାରି ନଥିଲେ—ବରଂ ନିଜ ଶୋଇବା.

ଘରେ ବଡ଼ବାପାଙ୍କର ଅସ୍ତିତ୍ୱ ଥିଲା ତାଙ୍କ ପାଇଁ ଅଭେଦ୍ୟ ଆଶ୍ରୟର ସ୍ଥଳ । ଘର ସଂସାର ଓ ପରିବାରକୁ ଏକ ଆନୁଷଙ୍ଗିକ ହିସାବରେ ସେ ଗ୍ରହଣ କରି ନେଇଥିଲେ ଏବଂ ବାଛି ନେଇଥିଲେ ତାଙ୍କ ପ୍ରଫେସନାଲ ଲାଇଫ୍‌ରେ ସାହାଯ୍ୟ କରିପାରିବା ଭଳି ଜଣେ କର୍ମପ୍ରବଣ ନର୍ସଙ୍କୁ । ସେବିକା ହିସାବରେ ତାଙ୍କ ସ୍ତ୍ରୀ ଏକ ଆଦର୍ଶନାରୀ । ଆଫ୍ରିକାରେ ସେ ଯାଇ ପାଞ୍ଚ ବର୍ଷ ଭଲ୍ୟୁଣ୍ଟିଆର ଭାବରେ କାମକରି ଆସିଥିଲେ । ଏଣୁ ଦୁହେଁ ବେଶ୍ ଯୋଡ଼—ତାଙ୍କର ପ୍ରାଇଭେଟ୍ ନର୍ସିଂହୋମ୍ ଥିଲା ସୁଖ୍ୟାତ । ଭୀଷଣ ବ୍ୟସ୍ତ ଦୁଇଜଣ, ଅର୍ଥର ଅଭାବ ନାହିଁ—ଯାହାକୁ କହନ୍ତି 'ରୋଲିଂ ଇନ୍ ମନି' । ସବୁ କିଛି ଦେବେଶ ଭାବନ୍ତି ସେଇ ବଡ଼ବାପାଙ୍କ କୋଳର ଆଶୀର୍ବାଦ ।

ଦିଲ୍ଲୀରେ ଏଇ ଇଣ୍ଟରନେସନାଲ କନ୍‌ଫରେନ୍‌ସଟା ନ ହୋଇଥିଲେ ହୁଏତ ଆଜି ଦେଶମାଟି ମାଡ଼ିବାର ସୁଯୋଗ ଯୁଟି ନଥାନ୍ତା । ଗାଁ ଆଡ଼େ ଯିବାର ଆବଶ୍ୟକତା ନଥିଲା; କାରଣ ଯୁଆଡ଼େ ଗଲେ ସେଇ ବସ୍ତିର ଦୈନ୍ୟ ଆଉ ଘୃଣ୍ୟ ପରିବେଶ ।

ଚନ୍ତାଧାରର ଝିଅ କହିଗଲା, 'ଧୂମପାନ ବନ୍ଦ କରନ୍ତୁ, ସିଟ୍ ସିଧା ରଖନ୍ତୁ' ଅନୁରୋଧରେ । ସେ ପୁଣି ତଳକୁ ଅନାଇଲେ—ଦିଲ୍ଲୀ ଆଖପାଖ ପ୍ରାୟ—ସବୁଜିମା ଭିତରେ ଥାଏ ଠାଏ ଠାଏ ଧଳା ଓ ନାଲିଘର । ଲମ୍ବା ଲମ୍ବା ଅଙ୍କାବଙ୍କା ରାସ୍ତାର ଗାରସବୁ ଦେଖାଯାଉଛି । ମନେ ମନେ ସେ ହତୋତ୍ସାହ ହେଉଥିଲେ । ସଭ୍ୟତାର ନାନା ପ୍ରସାରଣ ଭିତରେ ଛର ଛରେ ସୁଯୋଜନା ହୋଇପାରିଲା ନାହିଁ । ସହର ସବୁ ଗଢ଼ିଉଠୁଛି । ଜନ ସଂଖ୍ୟା ଷ୍ଟାଟିଷ୍ଟିକ୍‌ସର ନିୟମ ଭାଙ୍ଗି ବଢ଼ି ବଢ଼ି ଚାଲିଛି । ସହର ସବୁ ଧୀରେ ଧୀରେ ହୋଇ ଉଠୁଛି ଗୋଟାଏ ଗୋଟାଏ ନର୍କକୁଣ୍ଡ । ଦୂରରେ ଉଦ୍‌ଲେବ ବିଭିନ୍ନ ସିନେମା, ଡକ୍ୟୁମେଣ୍ଟାରି ଆଉ ସରକାରୀ ତଥା

ଖବରକାଗଜ ରିପୋର୍ଟରୁ ସେ ଠିକ୍ ଅନୁମାନ କରିନେଇଥିଲେ ଭାରତର ଅବସ୍ଥା । ତାଙ୍କର ଆଖି ଆଗରେ କଟକରେ ପଢ଼ିବା ବେଳେ ଭୁବନେଶ୍ୱର ଏକ ନୂତନ ଯୋଜନାବଦ୍ଧ ସହର ଭାବରେ ଗଢ଼ାହେବାର ଆଶା, ମେଡିକାଲ ପାଶ୍ କଲାବେଳକୁ ଅଶୋକନଗର ଓ ବାପୁଜୀନଗରର ପଛଧାଡ଼ରେ ଥିବା ବସ୍ତି ଆଜି ନାଳପାଣିରେ କୁତ୍ସିତ ଓ ବୀଭତ୍ସ ହୋଇଯାଇଥିଲା । ଆଜି ସେଇ ପ୍ରକ୍ରିୟା ଦିନକୁଦିନ ଦେଶଟାକୁ ଗ୍ରାସକରି ପକାଇଥିବ ଭାବିବାବେଳକୁ ତାଙ୍କ ଅନ୍ତରାତ୍ମା ଘୃଣା ଓ କ୍ରୋଧରେ ଜର୍ଜରିତ ହୋଇ ଉଠୁଥିଲା ।

ହୋଟେଲ୍‌ରେ ଆଗରୁ ରିଜାରଭେସନ କରାଯାଇଥିଲା, ତାଙ୍କ ସେକ୍ରେଟାରୀ ମାଧମରେ । ଏଣୁ ଗ୍ରୀନ ଚେନେଲ୍‌ରେ ବାହାରୁ ବାହାରୁ ହୋଟେଲ ତରଫରୁ ତାଙ୍କର ରିସେପ୍‌ସନ୍ ବ୍ୟବସ୍ଥାଠାରୁ ଆରମ୍ଭ କରି ଗାଡ଼ିପର୍ଯ୍ୟନ୍ତ ସବୁ ଠିକ ହୋଇ ରହିଥିଲା । କିନ୍ତୁ ବାହାରକୁ ଆସି ଗାଡ଼ିରେ ଜିନିଷ ରଖୁ ରଖୁ ଅନୁମାନ କଲେ ଦୂରରୁ କେହିଜଣେ ତାଙ୍କୁ ଲକ୍ଷ୍ୟକରି ଆଗେଇ ଆସୁଚି ବେଶ୍ ଜୋର୍‌ରେ । ସେ ସେଆଡ଼କୁ ଚାହିଁ ଅପେକ୍ଷାକରି ରହିଲେ । ଚିହ୍ନିବାରେ ଜମା ଅସୁବିଧା ହେଲାନି ।

ଗୌତମ । ଗୌତମ ବସୁ । ସାଙ୍ଗ ହୋଇ ହଷ୍ଟେଲରେ ରହୁଥିଲେ । ପ୍ରାୟ ଚାରିବର୍ଷ ବୋଧେ ଜୁନିଅର ଥିଲା ଗୌତମ । କିନ୍ତୁ ତା'ସହ ଅନ୍ତରଙ୍ଗତା ବଢ଼ିଥିଲା, କାରଣ ସେତେବେଳେ କଲେଜମାନଙ୍କରେ ସବୁଠାରୁ ପପୁଲାର ଗେମ୍ ଫୁଟବଲ ଟିମ୍‌ରେ ସେ ସ୍ଥାନପାଇଥିଲା ଏକସ୍ଟ୍ରା ଲେଫ୍‌ଟ ଆଉଟ୍ ଇନ୍ ସ୍ଥାନରେ । ପରେଶଚନ୍ଦ୍ର ଖେଳୁଥିଲେ ରେଗୁଲାର ଲେଫ୍‌ଟ ଆଉଟରେ । ଶେଷ ବର୍ଷ ମ୍ୟାଚ୍ ଗୁଡ଼ା, ବିଶେଷ କରି ଫୁଟବଲ ବଡ଼ ଅସୁବିଧା ସୃଷ୍ଟି-କରେ । ମ୍ୟାଚ ପରେ ସନ୍ଧ୍ୟାରେ ପଢ଼ାପଢ଼ିର ମୁଡ୍ ନଥାଏ । ଗୌତମକୁ ଭାଇ, ଯେଉଁଦିନ ତାର ସିଲେକସନ୍ ହେଲା ସେଇଦିନ ହିଁ ତାଙ୍କୁ ଖୋଜି ତା ରୁମ୍‌ରେ ପରେଶଚନ୍ଦ୍ର ପହଞ୍ଚି ଯାଇଥିଲେ ଓ ତାଙ୍କୁ ନିଜର ବାସ୍ତବ

ହିସାବରେ ଖେଳ ବିଷୟରେ ଯାହା ଟ୍ରେନିଂ ଦରକାର ଦେଇ ସେ ନିଜକୁ ଟିମ୍‌ରୁ ଦୂରେଇ ନେଇ ପାରିଥିଲେ । ସେଇ ସୂତ୍ରରେ ବେଶ୍ କିଛିଟା ଅନ୍ତରଙ୍ଗ ଥିଲା ଗୌତମ । ପ୍ରଥମ ଥର ବିଦେଶ ଯିବାବେଳକୁ ଛାଡ଼ିବାକୁ ଆସିଥିଲା କଲିକତା ପର୍ଯ୍ୟନ୍ତ ।

ପାଖକୁ ଆସୁଣୁ ପରେଶଚନ୍ଦ୍ର ତାର ନମସ୍କାରକୁ ଭ୍ରୂକ୍ଷେପ ନକରି କୋଳାଗ୍ରତ କରିନେଲେ ଗୌତମକୁ । ଗୌତମ ମଧ୍ୟ ଆଶ୍ଚର୍ଯ୍ୟ ହୋଇ-ଯାଇଥିଲା ଏତେ ବର୍ଷ ପରେ ପରେଶଚନ୍ଦ୍ର ତାକୁ ଚିହ୍ନିବା ସଙ୍ଗେ ସଙ୍ଗେ ଏପରି ଆଦର କରିବାରେ । ସାମାନ୍ୟ କଥାବାର୍ତ୍ତା ପରେ ସେ ହୋଟେଲର ଗାଡ଼ିକୁ ଜିନିଷପତ୍ର ନେଇ ହୋଟେଲ ଯିବାକୁ କହି ଗୌତମ ସହ ଚାଲିଲେ ତା ଘରକୁ, ତା ଅନୁରୋଧରେ ।

ଦିଲ୍ଲୀର ରାସ୍ତା ବେଶ୍ ସୁନ୍ଦର, ଯେକୌଣସି ଦେଶର ରାଜଧାନୀଠାରୁ ଊଣାନୁହେଁ । ମନରେ କିନ୍ତୁ ସେ ଗର୍ବ ଅନୁଭବ କରିପାରିଲେନି । ସେଇ ବସ୍ତି କଥା ସବୁ ଭାବୁ ଭାବୁ ଗାଡ଼ି ମେନ୍‌ରୋଡ଼ ଛାଡ଼ି ଆଗେଇଗଲା ନୂଆ-ହୋଇ ଗଢ଼ି ଉଠୁଥିବା ସହରତଳିକୁ । ସେଇ ରାସ୍ତାଧାରରେ ଗଢ଼ି ଉଠୁଥିବା ବସ୍ତିର ସବୁଠି ଦେଖିବାକୁ ପାଇଲେ ନିଜ ଆଖିରେ ସେଇ ନର୍କ । ସେ ମୁହଁ ବୁଲାଇ ସାମ୍ନାକୁ ଚାହିଁଲେ ।

ଗୌତମର ଘରେ ତା ସ୍ତ୍ରୀ ଓ ଦୁଇଟି ପିଲାଙ୍କ ପରିଚୟ ପର୍ବ ପରେ ପରସ୍ପର ସମ୍ବନ୍ଧରେ ସବୁ ଜାଣିସାରି ପରେଶଚନ୍ଦ୍ର ପଚାରିଲେ "ଏଠି ଏଇ ଦୁଇ ତିନି ହଜାର ଟଙ୍କା ଦରମାରେ ପଡ଼ି ରହିବ କାହିଁକି ? ଆସ, ତମେ ମୋତେ ସାହାଯ୍ୟ କରିବ ।"

ତାଙ୍କର ମନେଅଛି ଗୌତମର ସବୁଦିନେ ଗୋଟେ ବଡ଼ଆଶା ଇଂଲଣ୍ଡ ବା ଆମେରିକା ଯିବ । 'ଏଠି ଇଣ୍ଡିଆରେ ରହି ହେଉନି ଆ ଜୀବନ ତାକୁ ସବୁଦିନେ ଉତ୍ସାହ ଦେଇଥିଲା ଦିନରାତି ଖଟିବାପାଇଁ—

ଯେମିତି ପରେଶଭାଇ ପରି ଗୋଲ୍ଡ୍ ମେଡ଼ାଲ ପାଇ ଓ ବୃତ୍ତି ପାଇ ଯାଇପାରିବ ସେ ବିଦେଶକୁ । ଗୌତମ କିନ୍ତୁ ବିଦେଶ ଯାଇପାରି ନଥିଲେ । ଦିଲ୍ଲୀ ସହର ପରିଚାଳନାରେ ଥିବା ଡାକ୍ତର ଚାକିରିରେ ସେ ନିଜକୁ ହଜେଇ ଦେଇଥିଲେ ।

ହଠାତ୍ ଆମେରିକା ଯିବାପାଇଁ ଏପରି ଏକ ନିମନ୍ତ୍ରଣ ଏବଂ ତା ସଙ୍ଗେ ସଙ୍ଗେ ଏଡ଼ୱାର୍ଡ଼ ଏଷ୍ଟାବ୍ଲିସ୍ଡ୍ ମେଡ଼ିକାଲ ଇନ୍ଷ୍ଟିଚ୍ୟୁଟ୍ ସହ ସମ୍ପର୍କ ଓ ଚାକିରିରେ ଗ୍ୟାରେଣ୍ଟି, ତାଙ୍କୁ ବେଶ୍ ଲୋଭନୀୟ ମନେ ହେଲା । କିନ୍ତୁ ସେ ହଠାତ୍ ଚୁପ୍ ହୋଇ ରହିଗଲ । ପରେଶଚନ୍ଦ୍ର କଣ ସବୁ କହି ଚାଲିଗଲେ—ରିସାର୍ଚ୍ଚର ସୁବିଧା, ତା ସାଙ୍ଗକୁ ଡାକ୍ତରଙ୍କ ସେଠି ଦାମ ଓ ନାମ, ଏସବୁ ତା ମୁଣ୍ଡରେ ପଶୁ ନଥିଲା ।

ହଠାତ୍ ପରେଶଚନ୍ଦ୍ର ଅନୁଭବ କଲେ ଗୌତମର ନୀରବତା । ତା ମୁହଁକୁ ଚାହିଁ ସେ ମଧ୍ୟ ଚୁପ୍ ହୋଇଗଲେ । ଟିକିଏ ରହି ଗୌତମ କହିଲା—"ପରେଶଭାଇ, ଏଠି ଦରମା ମାସକୁ ନିଅଣ୍ଟ, ସତକଥା । ସଂସାର ଚଳାଇବା ମଧ୍ୟ କଷ୍ଟକର ।" ସାମାନ୍ୟ ନୀରବତା ପରେ ପୁଣି କହିଲା "ହେଲେ ତମେ ତ ବର୍ତ୍ତମାନ ଅଛ କେତେଦିନ, ମୁଁ ପରେ କହିବି ।"

ପରେଶଚନ୍ଦ୍ର ହୋଟେଲକୁ ଫେରୁ ଫେରୁ ବ୍ୟସ୍ତତା ଅନୁଭବ କଲେ । ଗୌତମର ସମୟ ମାଗିବାର କାରଣ କଣ ହୋଇପାରେ ! ଯେକୌଣସି ଡାକ୍ତର ଭାରତରେ ତାଙ୍କର ଏହି ଅନୁରୋଧ ପଦକରେ ଡେଇଁ ପଡ଼ିବା କଥା । ତାଙ୍କ ଜାଣିବାରେ ଗୌତମର ମଧ୍ୟ ପାରିବାରିକ ବନ୍ଧନ କାଟି ଆସିବାରେ କିଛି ଅସୁବିଧା ନାହିଁ । ସେ ବୁଝିବାକୁ ଚେଷ୍ଟା କଲେ, କଣ ବା କାରଣ ହୋଇପାରେ । ତାଙ୍କ ପକ୍ଷରେ ଏପରି ଭାବରେ ଅଯାଚିତ ନିମନ୍ତ୍ରଣ ତାକୁ କଣ ଅପମାନ ବୋଧ ହେଲା । ଗୌତମ ସହ ଅତୀତର ଯେଉଁ ସମ୍ପର୍କ ଏବଂ ଗୌତମ ଯେପରି ସରଳ ଓ ସାଦାସିଧା ପିଲା ତା ପକ୍ଷରେ ଅପମାନ ଦେବା ବା ପାଇବାର ପ୍ରଶ୍ନ ଉଠେନା ।

ତଥାପି ମନରେ କଣ୍ଟାନେଇ ଗୁଡ଼ତି କଟାଇଲେ ସେ । କନ୍‌ଫରେନ୍‌ସର ଟେକ୍‌ନିକାଲ୍ ସେସନ ସନ୍ଧ୍ୟାବେଳେ କୌଣସି ଭି: ଆ: ପି:ଙ୍କ ଇନାଗ୍ୟୁରେସନ୍ ପରେ ଆରମ୍ଭ ହେବ । ଏଣୁ ଖୁବ୍ ସକାଳୁ ଉଠି ଗୌତମ ତା ଡ଼ାକ୍ତରଖାନା ଯିବା ସମୟୁ ଆଗରୁ ଯାଇ ପୁଣି ଦୁଇପଦ କଥା ହେବାପାଇଁ ବାହାରି ପଡ଼ିଲେ ସେ । ପୁଣି ଟ୍ୟାକ୍‌ସିରେ ସେଇ ବସ୍ତି ପାରିହୋଇ ଯିବାବେଳେ ସେ ମୁହଁ ବୁଲାଇ ନେବାପୂର୍ବରୁ ଲକ୍ଷ୍ୟ କଲେ ଗୋଟାଏ ଜାଗାରେ ଗୁଡ଼ାଏ ଲୋକ ଭିଡ଼ି । ଭଲକରି ଲକ୍ଷ୍ୟ କଲେ, ପିଲାଛୁଆ ବୁଢ଼ାବୁଢ଼ୀ ସବୁ ଜମା । ଗୋଟେ ବାରଣ୍ଡା ଉପରେ ଟେବୁଲ ପକାଇ କିଏ ବସିଛି । ଗାଡ଼ି ଆଉ ଟିକିଏ ଆଗେଇ ଯିବାରୁ ଅନୁମାନ କଲେ ଲୋକଟି ନଇଁପଡ଼ି ବାରଣ୍ଡାରେ ପଡ଼ିଥିବା ଖଟିଆ ଉପରେ କାହାକୁ ଯେପରି ପରୀକ୍ଷା କରୁଛି । ଡ଼ାକ୍ତର ନିଶ୍ଚୟ । ଟେବୁଲ ଉପରେ ବର୍ତ୍ତମାନ ବ୍ଲଡ଼ପ୍ରେସର ଯନ୍ତ୍ର ଓ ଅନ୍ୟାନ୍ୟ ଡାକ୍ତରି ଜିନିଷ ସବୁ ସେ ଚିହ୍ନିପାରିଲେ । ଡ଼ାକ୍ତର ଜଣକ ରୋଗୀ ଦେଖିସାରି ମୁଣ୍ଡ ଟେକିବାରୁ ଚିହ୍ନିଲେ ସେ ତାଙ୍କ ଗୌତମ । ଗାଡ଼ିକୁ ରହିବାକୁ କହି ସେ ଧୀରେ ଧୀରେ ଯାଇ ସେ ଲୋକଙ୍କ ପଛଆଡ଼େ ଠିଆ ହୋଇ ଲକ୍ଷ୍ୟ କଲେ ; ସତେ ଯେପରି ଡାକ୍ତର ଗୌତମ ତା ନିଜର ପରିବାରର କାହାରିକୁ ସାନ୍ତ୍ୱନା ଦେଉଛି ; ସେବା କରୁଛି ଅନ୍ତରର ସ୍ନେହଦେଇ । କାହାରି ଠାରୁ ସେ ପଇସା ନେଉନାହିଁ । ଫେରିଯାଉଥିବା, ଆଉ ସେଠି ଜମା ହୋଇଥିବା ପ୍ରତିଲୋକର ଆଖିରେ ସେ ଦେଖିଲେ ଗୌତମ ପ୍ରତି ସେମାନଙ୍କର ପ୍ରତିଦାନର ସ୍ନେହ-ପ୍ରେମର ଧାରା ।

ସେ ଫେରିଆସିଲେ ହୋଟେଲକୁ । ଆଉ ସେଇଠୁ ଫୋନ୍ କଲେ ସ୍ତ୍ରୀଙ୍କ ପାଖକୁ—"ତମର ସେଇ ଆଫ୍ରିକାଜୀବନର ଯେଉଁ ଆତ୍ମସନ୍ତୋଷ, ଯାହାକୁ ତମେ ବାରମ୍ବାର ତମର କାମ୍ୟ ବୋଲି କହିବୁଲ ; ଆସ ଏଠି ତମ ସ୍ୱାମୀର ଅସହାୟା ଭାଇଭଉଣୀଙ୍କ ଠାରେ ସେଇ ସେବା କରି ତମର ଆଶା ପୂରଣ କରିବ ; ଆସ ।"

□□

# ମିଛ ବାଘ

ରଜତ ଚୌଧୁରୀ ଠିଆହୋଇ ନୂଆହୋଇ ଗଢ଼ି ଉଠୁଥିବା ଲନ୍‌ର ସବୁଜିମା ଉପଭୋଗ କରୁଥିଲେ । ହର୍ଟିକଲ୍‌ଚରର ରମାକାନ୍ତ ସୁନ୍ଦର-ଭାବରେ ପ୍ଲାନିଂ କରିଦେଇ ଏତେ ବଡ଼ ବଗିଚାଟାରେ ଫୁଲଫୁଟାଇ ଦେଇ ଯାଇଥିଲା ସେ ବର୍ଷ; ଏ ଘରେ ପ୍ରଥମେ ଆସି ରହିବା ପରେ ପରେ । ସେତେ-ବେଳେ ତାଙ୍କ ବଗିଚାର ଫୁଲ ପାଇଁ ଶ୍ରୀମତୀ ଗଭର୍ଣ୍ଣରଙ୍କ ପାଖରୁ ସିଲ୍‌ଡ୍ ଆଣିବାକୁ ସିବାଦନ ଜାଣି ଜାଣି ରମାକାନ୍ତଙ୍କୁ ସହର ବାହାରକୁ ପଠାଇ ଦିଆଯାଇଥିଲା କଣ ଗୋଟେ ଡ୍ୟୁଟି ଦେଖାଇ । ଅବଶ୍ୟ ବନ୍ଧୁମହଲରେ ସେଇ ରମାକାନ୍ତ ସାହାଯ୍ୟରେ ଅନ୍ୟମାନେ ରମାକାନ୍ତ ସାମ୍ନାରେ ସେଇ ସିଲଡ଼୍ ଗ୍ରହଣ କରିବାର ବାହାଦୁରି ସେ ନେଇ ନାହାଁନ୍ତି ତା' ନୁହେଁ ଏପଟ୍‌କ ୟୁନିଭରସିଟିର ପ୍ରଫେସରଙ୍କ ପ୍ରତ୍ୟକ୍ଷ ଇଶାରାରେ ଡିପାର୍ଟମେଣ୍ଟରେ ତିଆରି ସନ୍ଦର୍ଭ ଉପରେ ତାଙ୍କ ବନ୍ଧୁମାନେ ଡକ୍ଟରେଟ୍ ନେବାକୁ ଲଜ୍ଜା-ବୋଧ କରିନାହାନ୍ତି; କିନ୍ତୁ ରଜତଚୌଧୁରୀଙ୍କୁ ରମାକାନ୍ତ ସାମ୍ନାରେ ତାହାର ପରିଶ୍ରମ ଯୋଗୁଁ ଏପରି ଏକ ସିଲ୍‌ଡ୍ ନେବାବେଳକୁ ଟିକିଏ ବାଧିଲା । ଏଣୁ ଆତ୍ମସନ୍ତୋଷ ପାଇଁ ତାର ଅନୁପସ୍ଥିତି ସୃଷ୍ଟି କରିବା ଏକ-ପ୍ରକାର କର୍ତ୍ତବ୍ୟ ବୋଲି ସେ ନିଜ ପକ୍ଷରେ ଯୁକ୍ତି କରିଥିଲେ । ଖାଲି ଏ ବିଷୟରେ ନୁହେଁ ଡିପାର୍ଟମେଣ୍ଟରେ ତାଙ୍କର ଏ ପ୍ରକାର ଦୁର୍ବ୍ୟବହାର ପାଇଁ

ସେ ବେଶ୍ ପ୍ରସିଦ୍ଧ । ଅଧସ୍ତନଙ୍କ ରିପୋର୍ଟ ବା ନୋଟ୍ ନେଇ ସେ କୌଣସି ଡ଼ିସ୍‌କସନ୍ ସେକ୍ରେଟାରୀଙ୍କ ସହ କଲାବେଳେ ସବୁବେଳେ ଏକା କରିବାକୁ ଚେଷ୍ଟା କରନ୍ତି । ସମସ୍ତେ ଜାଣନ୍ତି ତଳ ଅଫିସରଙ୍କ ଭୁଲଭଟକାକୁ ଢ଼ାଙ୍କିବା ପାଇଁ ସେ ତାଙ୍କୁସବୁ ସାଙ୍ଗରେ ନଅନ୍ତିନ କୌଣସି ଡ଼ିସକସନ୍ ପାଇଁ; କିନ୍ତୁ ରିପୋର୍ଟ ବା ନୋଟର ସୁନାମରେ ଭାଗ ମଧ୍ୟ କେହି କେବେ ପାଇବା କଥା ମନେ ପକାଇବାକୁ ଚେଷ୍ଟା କରନ୍ତି ନାହିଁ—କାରଣ ସେ ଲେଭେଲରେ ସୁନାମ ସବୁରେ ଅନ୍ୟମାନଙ୍କର ପ୍ରାପ୍ୟ କିଛି ନାହିଁ । ସରକାରଙ୍କ ସେଇ ଲେଭେଲର ଭୁଲ୍ ଢ଼ାଂକିବା ପାଇଁ ଏସୋସିଏସନ୍ ଓ ଲବି ସାଙ୍ଗକୁ ପରସ୍ପରର ସୁନାମ ସୃଷ୍ଟି କରି ଡ଼ିଣ୍ଡିମ ପିଟିବା ଏକପ୍ରକାର ଟ୍ରେଡ୍ ସିକ୍ରେଟ୍ କହିଲେ ଚଳେ । ସେଠି ଦଣ୍ଡ ଦେବାକୁ ଇଚ୍ଛାକଲେ ନିୟମକୁ ବେନିୟମ; ଏବଂ ସୁବିଧା ପାଇବାକୁ ଇଚ୍ଛାକଲେ ବେନିୟମକୁ ନିୟମ କରିବା ଅତି ସାଧାରଣ କଥା ।

"ଚୌଧୁରୀସାହେବ ବେଶ୍ ଭାରି କଢ଼ାଲୋକ; ୧୦ଟାରୁ ଗୋଟେ ମିନଟ୍ ପାରେଇବ ନାହିଁ ତାଙ୍କର ପ୍ରବେଶ । କରିଡ଼ରରେ ଚାଲିଗଲା ବେଳକୁ ନମସ୍କାର ଓ ପ୍ରଣାମର ଉତ୍ତର ମୁଣ୍ଡ ହଲାଇ ସାମାନ୍ୟ ହସି ସେ ଗ୍ରହଣ କରନ୍ତି । କିନ୍ତୁ କାହାରି ମୁହଁକୁ ସେ ଚାହାନ୍ତି ନାହିଁ । ସବୁବେଳେ ସେ ଚିନ୍ତାଶୀଳ । ଡିପାର୍ଟମେଣ୍ଟର ଭାରଟା ଗୋଟେ ରକମ ଦର୍ଶନବିଦ୍ୟା ହୋଇ ତାଙ୍କ ମୁଣ୍ଡଉପରେ ମାଡ଼ି ବସିଲା ପରି ତାଙ୍କ ଚାଲିଚଳଣି କଥାବାର୍ତ୍ତା ସବୁ-ଥିରେ ଦାର୍ଶନିକ ଭାବ । ଗମ୍ଭୀର ଚିନ୍ତା ନକରି ସେ କଥା କହନ୍ତିନ; ଆଉ ଯାହା କହନ୍ତି ମାପିଚୁପି । ସରକାରଙ୍କ ଏତେ ଉଚ୍ଚସ୍ତରରେ ବାକ୍ ସଂଯମ ନିହାତି ଜରୁରୀ, ଏଥିରେ ସନ୍ଦେହ ନାହିଁ । ଠିକ୍ ଦେଢ଼ଟା ବେଳକୁ ଅଧା ଫାଇଲ କାମ ହୋଇଥିଲେ ବି ଡିକ୍‌ଟେସନ୍ ଅଧାରଖି (ଦରକାର ପଡ଼ିଲେ) ସେ ଉଠନ୍ତି, କାରଣ ସମୟାନୁବର୍ତ୍ତିତା ରାଜ୍ୟଶାସନର ଏକ ଅପରିହାର୍ଯ୍ୟ ଅଙ୍ଗ ।

ଖାଲି ଯେ ଲଞ୍ଚ୍‌ରେ ଯିବା ପାଇଁ ସେ ସମୟାନୁବର୍ତ୍ତୀ ତା ନୁହେଁ ; ଘରୁ ଠିକ୍ ଦଶଟାରେ ଆସି ପାଞ୍ଚଟାରେ ଯିବା ପର୍ଯ୍ୟନ୍ତ ସବୁ ମିଟିଂ, ଏପଏଣ୍ଟମେଣ୍ଟ ତାଙ୍କର ମିନଟ୍ ସେକଣ୍ଡ ଜଗି । କେବଳ ଚିଫ୍‌ଙ୍କ ପାଖରେ କେବେ କେମିତି ମିଟିଂରେ ଡେରି ହେଲେ ହୋଇପାରେ, ନହେଲେ ପାଞ୍ଚଟାପରେ ଗୋଟିଏ ମିନଟ୍ ଅଫିସରେ ରହିବାର ଯଥାର୍ଥତା ତାଙ୍କ ପାଖରେ ନାହିଁ । ଆଉ ଏଇ ଗୋଟିଏ ଦିନର କାର୍ଯ୍ୟବ୍ୟସ୍ତତା ଭିତରେ ଲୋକଟାର ସୁଇଚ୍‌ଟାଇ ସାମାନ୍ୟ ଟିକେ ହଲି ନଥାଏ କହିଲେ ଚଳେ । ୧୦ଟା ବେଳେ ଘରୁ ଆସିବା ସମୟରେ ଯେଉଁ ଫିଟ୍ ଫାଟ୍, ପାଞ୍ଚଟା ବେଳକୁ ୫ଟା ମିଟିଂ ସାରି ମଧ୍ୟ ସେହିପରି ।

ଯେଉଁ ପିଅନ ବା ପ୍ରାଇଭେଟ୍ ସେକ୍ରେଟାରୀ କି ଷ୍ଟେନୋ ସାହାବଙ୍କ ଘରକୁ ଯିବା ଆସିବା କରନ୍ତି, ସମସ୍ତଙ୍କ ମୁହଁରେ ସେଇ ଗୋଟେ କଥା— "ବାପରେ ; ଅଫିସରେ ଯେମିତି ଘରେ ସେମିତି ।" ସକାଳୁ ଡ୍ରେସିଂ ଗାଉନ ପିନ୍ଧି ଆସି ଲନ୍‌ରେ (ଖାଲି ବର୍ଷାଦିନ ଛାଡ଼ିଦେଲେ) ଖବରକାଗଜ ଆଉ ଚା । ନହାତି ଦରକାର ଥିଲେ ନଅଟା ପୂର୍ବରୁ କିଛି ଅର୍ଜେଣ୍ଟ ଫାଇଲ୍ କାମ ସାରି ସେ ଭିତରକୁ ଯାଆନ୍ତି ନିତ୍ୟକର୍ମ ସାରିବା ପାଇଁ । ଘରେ ସବୁ ଯେମିତି ଘଣ୍ଟାକଣ୍ଟାରେ ବନ୍ଧା । ଟୁଁ ବୋଲି ଶବ୍ଦଟାଏ ବାହାରେ ନାଇଁ ଏତେ ବଡ଼ ଘରୁ । ପିଲାଏ ଯେ ଯୁଆଡ଼େ ସକାଳୁ ବାହାରି ଯାଆନ୍ତି ସ୍କୁଲ୍ । ସ୍ତ୍ରୀ ମଧ୍ୟ ତଦ୍ରୂପ । ସବୁବେଳେ ଚକ୍‌ଚକ୍— ସକାଳୁ ବା ଯେତେବେଳେ ହେଲେ ବି ସେ ଗୋଟେ ପରି ରକମ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଟିପ୍‌ଟାପ୍ ହୋଇ ଥାଆନ୍ତି । ସାହେବତ ସିଧା ଇଂରାଜୀ କାଇଦାରୁ ଉଠି ଆସିଲା ପରି ।

ଚୌଧୁରୀସାହେବ ଛୁଟିଦିନଟା ପିଲାଙ୍କ ସହ ଏମିତି ଲନ୍‌ରେ ବସନ୍ତି, ଗପ କରନ୍ତି । କେବେ କେମିତି ପିଲାଏ ଶଂଟଲ ଖେଳନ୍ତି । କିନ୍ତୁ ବଡ଼ ପାଟିରେ କଥା ବା ହସ କେହି କେବେ ଶୁଣିନି । ସେଦିନ ବହୁବର୍ଷ ପରେ

ବମ୍ବେରୁ ଶ୍ରୀକାନ୍ତ ଆସିଥିଲା । ରେଭେନ୍‌ସାରୁ ସାଙ୍ଗ ହୋଇ ବି:ଏ:ଟା ପାସ୍ କରିଥିଲେ ସେମାନେ । ଉଭୟଙ୍କର ପଲିଟିକାଲ ସାଇନ୍‌ସ ଅନର୍ସ ; ଏଣୁ ଦୁଇବନ୍ଧୁ ବେଶ୍ ଅନ୍ତରଙ୍ଗ ହୋଇଥିଲେ । ତାପରେ ରଜତ ଚୌଧୁରୀ ଏହ୍ଲାବାଦ ଚାଲିଗଲେ, ଆଉ ଶ୍ରୀକାନ୍ତ ନିଜ କାମନେଇ ବ୍ୟସ୍ତ ରହିଲା । ଅଧିକ ପଢିବା ତାର ଦରକାର ନଥିଲା ।

ହଠାତ୍ ଗେଟ୍ ବାହାରେ ସିଧା ଗାଡ଼ି ରଖି ଧଡ଼୍‌କରି ଖୋଲି ପଶି ଆସିବାର ସାହସ ଅନ୍ତତଃ କାହାରି ନଥିଲା—ଏଇ ଚୌଧୁରୀ ସାହେବଙ୍କ କୋଠିକୁ । ବିରକ୍ତ ହୋଇ ଶ୍ରୀମତୀ ମଧ ଆରକେରିଆ ଗଛର ଉହାଡରୁ ଚାହିଁଲେ । ରଜତ ରଜତ ବୋଲି ଚିତ୍କାର କରୁ କରୁ ଦାଣ୍ଡ ବାରଣ୍ଡା ଆଡକୁ ମାଡ଼ି ଯାଉଥିବା ଅଭଦ୍ରଲୋକଟିକୁ ଉର୍ଦ୍ଦି ପିନ୍ଧା ପିଅନ ବାହାର କରିଦେବା ପୂର୍ବରୁ ରଜତ ଚୌଧୁରୀ ଚିହ୍ନି ପାରିଥିଲେ ଶ୍ରୀକାନ୍ତକୁ ଏବଂ ମାରବରେ ଉଠିଆସି ତା ପାଖରେ ପହଞ୍ଚି "ଆରେ ଇଆଡେ ଆ" କହି ଡ଼ାକି ନେଇଗଲେ ଲନ୍ ଆଡ଼କୁ । ଶ୍ରୀମତୀଙ୍କ ସହ ପରିଚୟ ଓ ନମସ୍କାର ଆଦାନ ପ୍ରଦାନ ପରେ ଶ୍ରୀକାନ୍ତ ଆଶ୍ଚର୍ଯ୍ୟଭାବ ଦେଖାଇ ଘର ଆଡକୁ ଚାହିଁ କହିଲେ—"କଣ ଘରେ କାହାରି ଦେହ ଖରାପ ?" ସାମ୍ନାରେ ଦୁଇଜଣଙ୍କ ଆଖିର ଅବୁଝା ପ୍ରଶ୍ନବାଚୀର ଭାବକୁ ଉତ୍ତର ଦେବାକୁ ଯାଇ ଯୋଡିଲେ "ଏମିତି ସବୁ ଚୁପ୍‌ଚାପ୍ ଯେ ?" ବନ୍ଧୁ ଓ ବନ୍ଧୁପତ୍ନୀ ଚୁପ୍ ରହିଲେ । ରଜତ ଚୌଧୁରୀ ସବୁ କଥାରେ ଗାମ୍ଭୀର୍ଯ୍ୟ ରକ୍ଷାକରି ସବୁ ପ୍ରଶ୍ନର ଉତ୍ତର ପଦେ ଦିପଦରେ ଦେଲେ ବି ଶ୍ରୀକାନ୍ତ ତାଙ୍କ ସବୁହିନଆ ଉଚ୍ଚ ସ୍ୱରରେ ସବୁ ହାଲ ପଚାରିଗଲେ । ନିଜ ହାଲ କହୁ କହୁ ପଢ଼ା ବେଳର ଅନ୍ୟ ବନ୍ଧୁ ବାନ୍ଧବ ଆଉ ବିଶେଷକରି ବାନ୍ଧବୀମାନଙ୍କ ଖବର ପଚାରିବା ଆରମ୍ଭ-କଲେ । ସେ ନିଜେ ଜାଣିଥିବା ବନ୍ଧୁମାନଙ୍କ କଥା କହି ଜାଣିବାକୁ ପାଇଲେ ରଜତ ଚୌଧୁରୀ କାହାରି ଖବର ରଖି ପାରିନାହାନ୍ତି; ଏପରିକି

ଏଇଠି ମାର୍କେଟ ପାଖରେ ଭବାନୀ ଅଛୁ, ଆଉ ସବୁ ଆମ ବେଚ୍ ପିଲଙ୍କ ଯୋଗାଯୋଗ ତାହାର ମାଧ୍ୟମରେ ; ତାକୁ ମଧ୍ୟ ଯେପରି ମନେ ପକାଇବାକୁ ରଜତଙ୍କୁ ଟିକେ ସମୟ ଲାଗିଲା । ମନେପଡ଼ିଲା ଶ୍ରୀକାନ୍ତଙ୍କର, ଭବାନୀର ନୋଟ ନେଇ ସେତେବେଳେ ପ୍ରାୟ ପଢ଼ାପଢ଼ି କରୁଥିଲା ରଜତ । ପାଟିକରି କହି ଉଠିଲେ—"ଭୁଟା ଗୋଟେ ନମକହାରାମ; ଭବାନୀ ଖବର କେମିତି ଭୁ ରଖିନୁ କହତ ?" ଭାଗ୍ୟ ଭଲ, ଶ୍ରୀମତୀ ଉଠିଯାଇଥିଲେ ଚା'ର ବନ୍ଦୋବସ୍ତ କରିବା ପାଇଁ । ପିଲାଏ ମଧ୍ୟ ନମସ୍କାରଟିଏ ଲେଖାଏଁ ପକାଇ ଭିତରକୁ ଚାଲିଯାଇଥିଲେ ।

ରଜତ ଚୌଧୁରୀଙ୍କର କାନମୁଣ୍ଡା ଗରମ ଲାଗିଲା; ମୁହଁ ଲାଲ ପଡ଼ିଗଲା । ଟିକେ ଲାଜେଇ ଗଲେ, ଅପ୍ରସ୍ତୁତ ହେଲେ ନିଶ୍ଚୟ । କିନ୍ତୁ ହଠାତ୍ ଶ୍ରୀକାନ୍ତ ପ୍ରତି ତାଙ୍କର ଏକ ଅସହିଷ୍ଣୁ ଭାବ ଜାତ ହେଲା । ଏଇଟା କାହିଁକି ହଠାତ୍ ଆସି ଏଠି ପହଞ୍ଚିଛି; କିଛି ମତଲବରେ ଅଛି ନିଶ୍ଚୟ । ବିଜିନେସ୍ କରୁଛି, କିଛି ଫାଇଦା ମତଲବରେ ଏଠି ହାଜର । ନହେଲେ ଏତେବର୍ଷ ପରେ ଏମିତି ଅନ୍ତରଙ୍ଗତା ଜମାଇବାକୁ ଚେଷ୍ଟା କାହିଁକି ?

ଚା-ଜଳଖିଆ ପରେ ଆସନ୍ତାକାଲି ସନ୍ଧ୍ୟାରେ ଓବେରୋଇରେ ଡିନର ନିମନ୍ତ୍ରଣ ଦେଇ ଉଠିବାକୁ ବାହାରିଲେ ଶ୍ରୀକାନ୍ତ । ରଜତ କଣ ମିଟିଂ କଥା ଆରମ୍ଭ କରୁଥିଲେ କିନ୍ତୁ ତାଙ୍କୁ ବାଧାଦେଇ ଶ୍ରୀକାନ୍ତ କହି ଉଠିଲେ "କଣ ବେ, ୭ଟା ପରେ ପୁଣି ଅର୍ଜେଣ୍ଟ ମିଟିଂ କଣ ? ତମେ ସବୁ ଦେଶଟାକୁ ମିଟିଂ କରି କରି ଖାଇଦେଲ ।" ଏପ୍ରକାର ବନ୍ଧୁର ନିମନ୍ତ୍ରଣ ରକ୍ଷା କରିବା ତାଙ୍କପରି ଅଫିସରଙ୍କ ପକ୍ଷରେ ଗର୍ହିତ ହେବ । ଏଣୁ ତା କଥାରେ ବାଧାଦେଇ ଶ୍ରୀମତୀ ପଣି ଆସୁ ଆସୁ କହିଲେ, 'ନାଁ ଆମକୁ ଆଶା କରନ୍ତୁ ନାହିଁ । ତାଙ୍କର କାମ ସଚ୍ଚ ସଚ୍ଚ ସବୁଦିନେ ଡେରି; ଆମକୁ କ୍ଷମା ଦିଅନ୍ତୁ ।'

ଗଳାରେ ଏପରି ସାର୍ପ୍ ଟଙ୍ଗ ଦେଖି ଶ୍ରୀକାନ୍ତ ମଧ୍ୟ ଟିକେ ଥମିଗଲେ । କହିଲେ—"ଆମ ବେଚ୍‌ର ଯେତେସବୁ ବନ୍ଧୁ ଏଠି ଅଛନ୍ତି ସମସ୍ତଙ୍କୁ ଡାକିଚି । ଭବାନୀ ଆସିବ । ପାପକ ଫେରିଚି ମଣ୍ଟ୍ରିଲରୁ ଛୁଟିରେ । ସିଏ ଫରେନ୍ ସାର୍ଭିସ୍‌ରେ ଅଛି ଜାଣିଥିବୁ । କରୁଣା ତ ଏଇଠି କେଉଁ ଡିପାର୍ଟମେଣ୍ଟରେ । ଦିବାକର ଯୁନିଭର୍ସିଟିରେ, ରଜନୀ କଟକରେ ଆଇ: ଟି: ଓ:, ଆଜ ଅଶୋକ ଓକିଲାତି କରୁଚି । ମାଳାଦ୍ରି ବେଙ୍କରେ, ଧୀରେନ୍ଦ୍ରକୁ ନେଇ ସେ ଆସିବ । ସମସ୍ତଙ୍କୁ କୁହା ହୋଇଚି, ଆଜ ଯଦି କେହି ଆମ ବେଚ୍‌ର ମିଳଯାନ୍ତି ସମସ୍ତଙ୍କୁ ଧରିଆସିବା ପାଇଁ । ଆସିପାରିଲେ ଅସିବୁ" କହି ସେ ବାହାରିଗଲେ । ରଜତ ଚୌଧୁରୀ ସ୍ତ୍ରୀଙ୍କ ସହ ଦୀର୍ଘ ନିଃଶ୍ୱାସଟେ ଛାଡ଼ି କହିଲେ 'ଗ୍ରହଗଣ' । ଶ୍ରୀମତୀ ବ୍ୟସ୍ତ ହୋଇ କହିଲେ "କି ପ୍ରକାର ବନ୍ଧୁ ତମର ସବୁ ଥିଲେ କେଜାଣି, ଭଦ୍ରତା ବି ନାହିଁ ।" ରଜତ ଚୌଧୁରୀ ସମ୍ମତି ସୂଚକ ନୀରବତା ନେଇ ବସି ରହିଥିଲେ ।

ସନ୍ଧ୍ୟାରେ ବାଥ୍‌ରୁମରେ ପଶି ଗରମପାଣିରେ ଗାଧୋଇ ଗାଧୋଇ ନିଜକୁ ଦର୍ପଣଭିତରେ ଲକ୍ଷ୍ୟ କଲେ ରଜତ ଚୌଧୁରୀ । ରୁମ୍‌ଭିତରେ ଗରମ ପାଣିର ବାମ୍ପରେ ଦର୍ପଣ ଉପରଟା ଅସ୍ୱଚ୍ଛ ଦେଖାଯାଇଥିଲା । ସନ୍ଧ୍ୟାର ଆଲୋପଟା ମଧ୍ୟ ରଜତଚୌଧୁରୀଙ୍କ ମନ ଉପରେ ଗୋଟେ ବହଳିଆ ଆସ୍ତରଣ ଜମାଇ ଦେଇଥିଲା । ତାଙ୍କ ମନ-ଦର୍ପଣରେ ଏଇ ଆସ୍ତରଣ ତଳେ ସବୁ ବନ୍ଧୁଙ୍କର ନାମଗୁଡ଼ା ଆଜି ଗୋଟେ ପରେ ଗୋଟେ ମୁଣ୍ଡ ଟେକିବାକୁ ଚେଷ୍ଟା କରୁଥିଲେ । ସତରେ କଣ ତାଙ୍କ ମନଟା ବନ୍ଧୁତ୍ୱକୁ ଏଡ଼ିଦେଇ ସରକାରୀ ପାହ୍ୟାର ମଇଳା ଆସ୍ତରଣ ଭିତରେ ଲୁଚିଯାଇଚି ? ହେଲେ ଏଇମାନଙ୍କ ସଙ୍ଗେ ଏଇ ସହରରେ ସେ ଯାଇ ମଉଜମଜ୍‌ଲିସରେ ମାତିବେ, ଏକଥା ରଜତଚୌଧୁରୀ ଭାବି ମଧ୍ୟ ପାରୁ ନଥିଲେ । ପାପକ ଚଳିବ । କରୁଣାଟା ଏଇଠି ସେକ୍ରେଟାରିଏଟ୍‌ରେ ଅଛି ସେ ଜାଣିଚନ୍ତି, ହେଲେ

ଚେଷ୍ଟା କର ଏତେଗୁଡ଼ା ବର୍ଷ ତା ସାମ୍ନାକୁ ଆସିବା ସେ ଦରକାର ମନେ କର ନାହାନ୍ତି, ଆଉ ରଜନୀ, ଭବାନୀ, ଅଶୋକ ସବୁ ସେଇ ଏକଦା ବନ୍ଧୁମାନେ କଣ ଆଜି ବି ବନ୍ଧୁ? ଆମ ଗାଁରେ ମୂଲିଆ ବ୍ରଜର ପୁଅ ମୋ ସଙ୍ଗେ ଗୃହଶାଳାଟରେ କେବେ ପଢ଼ୁଥିଲା ବୋଲି ସେଇ ବ୍ଲକ ଅଫିସ୍ ପିଅନ ଆଜି କଣ ମୋର ବନ୍ଧୁ ହୋଇପାରେ ?

ବାହାରୁ କବାଟ ଖଟ୍ ଖଟ୍ ହେଲା । ଶ୍ରୀମତୀ କହିଲେ "ଆଜି ଆମ କ୍ଲବ୍‌ର ଗଭର୍ଣ୍ଣିଂ ବଡ଼ି ମିଟିଂ ଅଛି । ମିସେସ୍ ବହିଦାର ଆସିଚନ୍ତି, ମୁଁ ଯାଉଚି—ଟିକେ ଡେ଼ରି ହେବ । ମାନେ ଏଇ ଦଶଟା ଯାଏ ।" ଉତ୍ତରକୁ ଅପେକ୍ଷା ନକରି ସେ ଆଗେଇ ଯାଇଥିଲେ ।

ଡ୍ରେସିଂ ଟେବୁଲ୍ ଆଗରେ ଥିବା ଦର୍ପଣଟିରେ ପୋଛି ହେଉନଥିବା ଫୋନ୍ଟା ବାଜିଲା । ଗାଧୁଆଘରେ କର୍ଡ଼ଲେସ୍‌ଟାକୁ ଉଠାଇ ନେଲେ ସେ । ଶ୍ରୀକାନ୍ତ ହୋଟେଲରୁ ଫୋନ୍ କରିଚି—"କାଲି ସିନା ଉଦ୍ଧାରକୁ ଆସି ପାରିନୁ, ମିଟିଂ ଅଛି, ଆଜି ଆସୁନୁ, ଭବାନୀ ଓ ରଜନୀ ଆସି ବସିଚନ୍ତି, ଚାଲିଆ ।"

କାଲିକା ପାଇଁ ସିନା ମିଟିଂର ବାହାନା ଦିଆଯାଇ ପାରିଥିଲା, କିନ୍ତୁ ଆଜି-ପାଇଁ ହଠାତ୍ କିଛି କହି ନପାରି ରଜତ ଉତ୍ତର ଦେଲେ "ହଁ, ଦେଖେ ଚେଷ୍ଟାକରୁଛି ।" ଶ୍ରୀକାନ୍ତ ଫୋନ୍‌ଟା ରଖିବା ପୂର୍ବରୁ କହିଲେ "କଣ ବେ ମାଇଚିଆଟା ନା କଣ ? ଶ୍ରୀମତୀଙ୍କ ପାରମିଶନ୍ ନେବୁଚ ?" ଏହା କହି ଉତ୍ତରଟାକୁ ଅପେକ୍ଷା ନ ରଖି ଫୋନ୍‌ଟା ରଖିଦେଲେ । ଦର୍ପଣ ସାମ୍ନାରେ ଠିଆହୋଇ ଡ୍ରେସିଂ ଟେବୁଲ୍ ଆଗରେ ଦର୍ପଣଟାକୁ ପୋଛିଦେଲେ । ସବୁ ଆସ୍ତରଣ ପୋଛିହୋଇ ଦର୍ପଣଟା ସଫା ହୋଇଗଲା । ସେ ନିଜର ସ୍ୱଚ୍ଛ ପ୍ରତିବିମ୍ବ ଦେଖିପାରୁ ନଥିଲେ ।

କଥା ପଦକ ବାଧିଲା ତାଙ୍କୁ । ସେ ପୋଛିପୋଛି ଧାର ବାହାଣ୍ଡ-ଆସିଲେ ଗାଧୁଆଘରୁ । ପାଇଜାମା ପଞ୍ଜାବୀଟେ ଗଳେଇ ଦେଇ ନିଜେ ଗେରେଜ୍ ଖୋଲି ଗାଡ଼ିଟା ଧରି ବାହାରିଗଲେ ସିଧା ଓବଗେଇ । ରୁମ୍ ନମ୍ବରଟା କାଉଣ୍ଟରରେ ପଚାରି ସେ ଯେତେବେଳେ ଧଡ଼୍ କରି ଶ୍ରୀକାନ୍ତଙ୍କ ରୁମ୍‌ର କବାଟଟା ଖୋଲିଦଅନ୍ତି, ବିଛଣାରେ ତିନିବନ୍ଧୁ ମିଶି ଖୋଲି ଦେଇଚନ୍ତି ଗପର ଆସର । ଯା ଗୋଡ଼ ତା' ଉପରେ ତା' ଗୋଡ଼ ଯାଉପରେ ପକାଇ ତିନିଜଣ ଠିକ୍ ସେଇ ରେଭେନ୍‌ସା ହଷ୍ଟେଲର ରୁମ୍‌ରେ ଗଡ଼ିବାପରି ଗଡ଼ୁଚନ୍ତି । ମୁହଁରେ ତାଙ୍କର ସେଇ ଯୁବ ସୁଲଭ ହସ ଆଉ କଥା ।

ହଠାତ୍ ଯେପରି ରଜତ ଚୌଧୁରୀଙ୍କ ହୃଦୟ ଭିତରେ ଗୋଟେ ଦ୍ୱାର ଖୋଲିଗଲା । ତାଙ୍କ ଅଜାଣତରେ ହଠାତ୍ ତାଙ୍କ ପାଟିଟା ବିସ୍ତାରିଗଲା ଏ କାନରୁ ସେ କାନକୁ । ସେ ବଡ଼ ପାଟିରେ କହି ଉଠିଲେ "ସବୁ ବଜାରିଆକ ଏଇଠି ଜୁଟିଚ ତ ?" ସମସ୍ତେ "ଆ ଭାଇ ଆ" କହି ଉଠିଆସୁଥିଲେ ।

ଗାଡ଼ି ଚାବିଟା ସାଇଡ୍ ଟେବୁଲରେ ରଖୁ ରଖୁ ଦର୍ପଣରେ ସେ ତାଙ୍କ ନିଜ ମୁହଁକୁ ଚାହିଁଲେ । ଦେଖିଲେ ସେଠି ରଜତ୍ ଚୌଧୁରୀ ବଦଳରେ ଛିଡ଼ାହୋଇଚି ରଜତ୍ । ଅନ୍ୟମାନେ ଆସି ତାଙ୍କୁ ଟାଣିନେଲେ । ରଜତ୍ "ରହବେ ଶଳେ" କହି ଗଡ଼ିଗଲେ ବିଛଣାରେ ।



# ସାଇ ପଡିଶା

ମିଷ୍ଟର ହୋତା ବାହାର ଆସିଲେ ତରତରହୋଇ ପୋର୍ଟିକୋ ତଳକୁ । ଗାଡ଼ିଟା ବର୍ତ୍ତମାନ ସୁଦ୍ଧା ଡ୍ରାଇଭର ଆଣି ପହଞ୍ଚାଇନ । ଅବଶ୍ୟ ଭୁଲ୍‌ଟା ତାର ନୁହେଁ, କାରଣ ହଠାତ୍ ଏଇ ଘଣ୍ଟାକ ଆଗରୁ ଚିଫ୍-ସେକ୍ରେଟାରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଫୋନ୍‌କଲେ—ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବାପୂର୍ବରୁ କେତେଟା ବିଷୟରେ ଡ଼ିସ୍‌କାସନ୍ ଆଗରୁ କରି-ନେବାକୁ ହେବ । ଫାଇନାନ୍‌ସରେ ମିଷ୍ଟର ହୋତାଙ୍କ ଆଠବର୍ଷ ରହଣି ଭିତରେ ସେ ସତେ ଯେମିତି ସରକାରଙ୍କ ପାଇଁ ଇନ୍‌ଡ଼ିସ୍‌ପେନ୍-ସିବଲ୍ । ଠିକ୍ କହନ୍ତି ବୟୋବୃଦ୍ଧ ମନ୍ତ୍ରୀ ଗଡ଼ନାୟକ—"ହୋତା ସାହେବ ଠିକ୍ ତ, ଦେଶର ଫାଇନାନ୍‌ସ ଆଉ ବଜେଟ୍ ଠିକ୍ ।"

ବାଧହୋଇ ଡ଼ାକିଲେ ପାଟିକରି ଘରଭିତରକୁ, ଗେରେଜ୍‌ଟା ଖୋଲିବାକୁ । ବଗିଚା ଲନ୍ କଡ଼େ କଡ଼େ ବୋଗେନଭିଲର ଗୁନ୍ଦିଆ ତଳଦେଇ ଉଛପାଖ ଗେରେଜ ଆଡ଼କୁ ଗଲାବେଳକୁ ହଠାତ୍ ବାଡ଼ ଆର-ପାଖରେ କିଏ ଗୋଟେ ଗୁଲପିବାର ଦେଖି ମନେ ମନେ ବିରକ୍ତ ହୋଇ-ଉଠିଲେ ମିଷ୍ଟର ହୋତା—ସବୁବେଳେ ଏମିତି ପଛପାଖଟା ଅରଣା କରି ପକାଇ ରଖିଲେ ଏ ଭଦ୍ରଲୋକ । କି ପ୍ରକାର ଲୋକଙ୍କୁ ଆଣି ଆଉଟ୍ ହାଉସ୍‌ରେ ରଖିଚନ୍ତି ଯେ ପିଲାଗୁଡ଼ା ଇଆଡ଼େ ଆସି ଚରିବା ବଗିଚାରେ

କି ଫୁଲରେବି ହାତ ଲଗାଇବା କିଛି ବଚନ ନୁହେଁ । ଅବଶ୍ୟ ଏମିତି କିଛି କମ୍‌ପ୍ଲେନ୍ ସେ ପାଇ ନାହାନ୍ତି, ତଥାପି କିଏ ଏ ଭଦ୍ରଲୋକ, ଏତେବଡ଼ ଜାଗା ଘେରି, ଗଛଟେ ନାଇଁକି ବଗିଚାଟେ ନାଇଁ । ଜାଗାଟା ଅରଣା କରି ପକେଇଚନ୍ତି । ଏମାନଙ୍କୁ ଏମିତି ବଡ଼ଘର ପୋଷାଏ ନାଇଁ—ସାମ୍ନାପଟରେ ବି କଣ ଅଛି ? ଖାଲି ଘାସ ଆଉ ଲ୍ୱାଟନ୍ ।

ଗ୍ୟାରେଜ ଖୋଲିଲେ । ସେ ବ୍ୟସ୍ତହୋଇ ନିଜେ ଷ୍ଟିଅରିଂ ଧରି ବସିଲେ । ତେଲପାଣି ଚେକ୍ କରିବାକୁ ବେଳନାଇଁ, ମନଟା ଭଲ ଲାଗିଲାନି । ଆଜିକୁ ଗାଡ଼ି କିଣିବାର ୧୫ ବର୍ଷ ହେଲା ଗୋଟେ ଦିନବି ସେ ଷ୍ଟାର୍ଟ୍ କରିବାକୁ ଦେଇ ନାହାନ୍ତି ତେଲପାଣି ଚେକ ନକରି । ଆଜି କିନ୍ତୁ ବ୍ୟତିକ୍ରମ—ଟାଇମ ହୋଇଗଲାଣି । ନୂଆ ଚିଫ୍ ସେକ୍ରେଟାରୀ । ଘରି କଡ଼ା, "ଟାଇମ୍ ମାନେ ଟାଇମ୍ ।" ତା'ସାଙ୍ଗକୁ ଆଜି ଇରିଗେସନ ଆଉ ଫ୍ଲଡ଼ କଣ୍ଟ୍ରୋଲର ଡ଼ିସ୍‌କସନ୍ ପାଇଁ ହେଡ଼୍ ଅଫ୍ ଦି ଡ଼ିପାର୍ଟମେଣ୍ଟ ସବୁ ଆସି ଠିକ୍ ପହଞ୍ଚିଯାଇଥିବେ । ଏଣୁ ବାଢହୋଇ ସେ ଗାଡ଼ି ଷ୍ଟାର୍ଟ କରି ବାହାରିପଡ଼ିଲେ । ଗେଟ୍‌ରୁ ବାହାରିବାବେଳକୁ ବାଁ ପାଖ ରାସ୍ତାର ଆର ପଟରେ ଥିବା 3R ଘରର ଦ୍ୱାରମୁହଁରେ ଲୋକ-ଗୁଡ଼ାଏ ଜମା ହୋଇଥିଲେ । ଗାଡ଼ି ବୁଲାଉ ବୁଲାଉ ତାଙ୍କର ମନେପଡ଼ିଲା ସକାଳୁ ମର୍ଣ୍ଣିଙ୍ଗ୍ ୱାକ୍‌ରେ ଗଲାବେଳେ ତାଙ୍କ ଘରସାମ୍ନାରେ କିଏ ସବୁ ୫/୬ ଜଣ ଜମା ହୋଇଥିଲେ ନା କଣ । ବ୍ୟସ୍ତତା ଲକ୍ଷ୍ୟକରି ଫେରିବାବେଳେ ସେବାଟେ ପୁଣି ସେମିତି ବ୍ୟବସ୍ଥା ଦେଖି ଘରେ ଆସି ଶ୍ରୀମତୀଙ୍କୁ ପଚାରିଥିଲେ "କଣ ଖବର ? ପାଖ ଘରେ ସକାଳୁ କାହିଁକି ଲୋକ ?"

ନିଦ ଆଖିରେ ବ୍ରସ୍'ଟା ମୁହଁରେ ଦେଉ ଦେଉ ଶ୍ରୀମତୀ ଗରମ ହୋଇ-ଉଠିଲେ—"ତମର କାହିଁକି ଏତେ ମୁଣ୍ଡବଥା ? ବୋଧେ କିଏ ମରି

ବଦଳ କରୁଥିବ ।’’ ମିଷ୍ଟର ହୋତା କିନ୍ତୁ ସନ୍ତୁଷ୍ଟ ନ ହୋଇ କହିଲେ— ନା’ମ, ଏଇ ଗଲା ଗୃଣ୍ଡପାଞ୍ଚ ମାସ ତଳେ କଏ ନୂଆଲୋକ ଆସିଥିଲେ ନା କଣ, ପୁଣି କାହାଁକ ଘର ବଦଳ ହେବ ?’’

ଶ୍ରୀମତୀଙ୍କୁ ଏସବୁ କଥାରେ ମୁଣ୍ଡପୂରାଇବାକୁ ବେଳ ନାହିଁ କି ଇଚ୍ଛା ବି ନାହିଁ । “ଯେତେ ସବୁ ବାଜେଲୋକଙ୍କ ବାଜେକଥା ନେଇ ମୁଣ୍ଡ ଖେଳାଇଲେ ଏ କ୍ୟାପିଟେଲ୍‌ରେ କଣ ଚଳିହେବ ?’’ ମିଷ୍ଟର ହୋତା ଅବଶ୍ୟ ଅଧିକ କିଛି ଆଗେଇବା ଦରକାର ମନେକଲେନି । ସେତିକି-ବେଳକୁ ହଠାତ୍ ପିଅନ ଆସି କଥାରେ ବାଧାଦେଲା—‘ଶଫ୍ ସେକ୍ରେଟାରୀଙ୍କ ବସାରୁ ଫୋନ୍ ।’

ଯାଉ ଯାଉ ଗୋଲେଇ ଛକପାଖରେ ଟ୍ରାଫିକ୍ ସିଗ୍‌ନାଲ୍‌ରେ ଅଟକିଗଲେ, ସାଇଡ୍‌ରେ ଆସି ଛିଡ଼ାହେଲା ଆଉ ଗୋଟେ ଗାଡ଼ି । ଭିତରୁ ପ୍ରଧାନବାବୁ ପାଟିକରି ଉଠିଲେ ‘ଆଜ୍ଞା ନମସ୍କାର’ । ନମସ୍କାର ଆଦାନ ପ୍ରଦାନ ଭିତରେ ମିଷ୍ଟର ହୋତା ଜାଣିଲେ ଏ ବାବୁ ମଧ୍ୟ ସେଇ ମିଟିଂ ପାଇଁ ବାହାରିଛନ୍ତି । ମନେପକାଇବାକୁ ଚେଷ୍ଟାକଲେ, ଓ ଏଇ ବୋଧେ ଲିଫଟ୍ ଇରିଗେସନ୍‌ର ଡ଼ାଇରେକ୍‌ଟର ଟେକ୍‌ନିକାଲ୍ କି କଣ ଗୋଟେ । ହଁ ତ ବୋଧେ—ନା ଧ୍ୟାଭିତରେ ୧ରେ କେବେ କେଉଁ ମିଟିଂରେ ପାଖରେ ବସିଥିଲେ । କହୁଥିଲେ, ମାଇନର ଇରିଗେସନ୍ କି ଗୋପାଳପୁର ପୋର୍ଟ, କେଉଁଠି ଗୋଟେ ଶଫ୍ ଇଞ୍ଜିନିୟର । ଯାହେଉ ଦେରି ଠିକେ ହେଲେବି ସାଙ୍ଗରେ ଆଉଜଣେ ଅଛି । ମନକୁ ଟିକେ ତାଙ୍କର ସାନ୍ତ୍ୱନା ମିଳିଲା ।

ସେକ୍ରେଟେରିଏଟ୍ ପୋର୍ଟିକୋ ତଳେ ଗାଡି ରଖିରଖି ହେ ତର-ତରରେ ଗାଡି ବନ୍ଦକରି ପ୍ରଧାନବାବୁଙ୍କ ସାଙ୍ଗରେ ଚାଲିଲେ ତରତର ହୋଇ, କାଳେ ସେ ଆଗେ ଚାଲିଯିବେ । ତାଙ୍କର ସିନା ଡ୍ରାଇଭର

ଥିଲା ବୋଲି ଗାଡି ଖୁବ ଚଳାଇବା ଦରକାର ପଡ଼ିଲାନି । ଯାହାହେଉ ଭଦ୍ରଲୋକ କିଛିଟା ଆଗେଇ ଯାଇଥିଲେ । ତାଙ୍କୁ ସାଙ୍ଗରେ ନେବା ମତଲବ୍‌ରେ ଟିକେ ବଡ଼ପାଟି କରି ମିଷ୍ଟର ହୋତା କହିଲେ 'କଣ ପ୍ରଧାନବାବୁ; କେଉଁ ହଲ୍‌ରେ ମିଟିଂଟା ଅଛି ଆଜି ?'

ପ୍ରଧାନବାବୁ ହଠାତ୍ ଏମିତି ଉପରପଡ଼ା କଥା ଶୁଣି ଟିକେ ଆଶ୍ଚର୍ଯ୍ୟ-ହେଲେ । ବର୍ଷ ବର୍ଷ ଧରି ବିଭିନ୍ନ ମିଟିଂରେ ଦେଖା । ଷ୍ଟାଫ୍ ପାଇଁ, ଏଟା ସେଟା ପାଇଁ କେତେଥର ଯିବାକୁ ପଡ଼େ ଫାଇନାନ୍‌ସକୁ । ମିଷ୍ଟର ହୋତା କିନ୍ତୁ ଧରାଦିଅନ୍ତିନି । ଚିହ୍ନି ନ ଚିହ୍ନିଲା ପରି ଗାମ୍ଭୀର୍ଯ୍ୟ ରଖି କଥା କହନ୍ତି । ଦେଖିବା, ବୁଝିବା, ଫାଇଲ ଆସୁ ଇତ୍ୟାଦି ଛଡ଼ା ଅଧିକ କିଛି ତାଙ୍କଠାରୁ ସେ ଆଶାକରି ନାହାନ୍ତି ।

ପ୍ରଧାନବାବୁ ଟିକେ ଧୀରେ ଧୀରେ ଗୁଲୁଗୁଲୁ କହୁଥିଲେ "ଆଜି ଲଞ୍ଚ ଆୱାରବେଳକୁ ମିଟିଂ ସରିବନି ? ସି: ଏମ୍‌.ଙ୍କର ଆଜି ଉପରଓଳି କୁଆଡେ ବାହାରକୁ ଯିବାର ଅଛି ନା କଣ ?" ମିଷ୍ଟର ହୋତା ଆଗେଇ ଯାଉଁଯାଉଁ, ହଁ ନା କହୁକହୁ, ଚିଫ୍ ସେକ୍ରେଟାରୀଙ୍କ ରୁମ୍ ସାମ୍ନାରେ ଆଗେଇ କବାଟଟା ଖୋଲି ଭିତରକୁ ପଶିଗଲେ ।

ମିଟିଂ ସରୁ ସରୁ ସତରେ ଅଢ଼େଇଟା ବାଜିଯାଇଥିଲା । ବ୍ୟସ୍ତ-ହୋଇ ତଳକୁ ସମସ୍ତେ ଓହ୍ଲାଇ ଯାଉଁଯାଉଁ ମିଷ୍ଟର ହୋତାଙ୍କ ମନେ ପଡ଼ିଲା, ଡିପାର୍ଟମେଣ୍ଟରେ କଣ ଗୋଟେ ଅର୍ଜେଣ୍ଟ ଚିଠି ଦସ୍ତଖତ କରିବାର ଅଛି । ସେ ଭେକ ସତ୍ତ୍ୱେ ନିଜ ରୁମ୍ ଆଡ଼େ ମାଡିଗଲେ । ତରତରରେ କାମସାରି ତିନିଟାବେଳକୁ ବାହାରି ଆସି ଗାଡ଼ିରେ ବସିପଡିଲେ ।

ହଠାତ୍ ଗାଡ଼ିଟା ଷ୍ଟାର୍ଟ ହେଲାନି । ଘର୍‌ଘର୍ ହୋଇ ରହିଗଲା । ଅବେଳଟା । କାହାରି ଆଉ ଗାଡ଼ିର ଦେଖାନାହିଁ । ହଠାତ୍ ଦେଖିଲେ ସେଇ ପ୍ରଧାନବାବୁ ସିଡ଼ିରେ ଓହ୍ଲାଇ ଆସୁଚନ୍ତି । ଗାଡିରୁ ବାହାରି ଆସି ଖୁବ

ପକାଉ ପକାଉ ପ୍ରଧାନବାବୁ ଆରମ୍ଭ କଲେ "କଣ ହେଲା ? ଗାଡ଼ି କିଛି ଟ୍ରବଲ ଦେଲା କି ?"

ବ୍ୟସ୍ତ ହୋଇ ମିଷ୍ଟର ହୋତା କହିଲେ "ଲିଫ୍‌ଟ ଟିକେ ଦେବେ ।"

"ଆସନ୍ତୁ ଆସନ୍ତୁ" କହି ପ୍ରଧାନବାବୁ ମଧ୍ୟ କୃତକୃତ୍ୟ ହୋଇଗଲେ । "ଚାଲନ୍ତୁ, ମୁଁ ତ ସେଇଆଡ଼େ ଯିବି ।" ଗାଡ଼ିରେ ବସି ବସି ପ୍ରଧାନବାବୁଙ୍କ କଥାବାର୍ତ୍ତାର ଉତ୍ତର ହଁ ନାଁରେ ଦେଉଥିଲେ ମିଷ୍ଟର ହୋତା । ପ୍ରଧାନବାବୁ ହଠାତ୍ କହିଲେ "ଆପଣଙ୍କ ଘର ସାମ୍ନାରେ ଯେ ଯେଉଁ ରଘୁମଣିବାବୁ ଅଛନ୍ତି, ତାଙ୍କ ଘରେ ଆଜି ସକାଳୁ ଗୋଟେ ମିସ୍‌ହାପ—"

ମିଷ୍ଟର ହୋତା ହଠାତ୍ ଏତେ ସମୟପରେ ପ୍ରଧାନବାବୁଙ୍କ ଆଡ଼କୁ ଚାହିଁଲେ । କହିଲେ "କିଏ ରଘୁମଣି ?"

ଆପଣଙ୍କ ଘର ସାଇଡ୍ ରାସ୍ତାର ଆରପାଖ 3R ଘରଟା । ଭଦ୍ରଲୋକ ଏଗ୍ରିକଲ୍‌ଚର ଡ଼ାଇରେକ୍‌ଟରେଟରେ ହେଡ୍‌କ୍ଲାର୍କ କି କଣ ! ପ୍ରଧାନବାବୁଙ୍କ ମନେପଡ଼ିଲା ସକାଳୁ ସେଠି ଲୋକ ଜମା ହୋଇଥିଲେ । ପଚାରିଲେ "କଣ ହେଲା ତାଙ୍କର ?"

"ତାଙ୍କ ଝିଅ କାଲି ଦାଣ୍ଡଘର ପଙ୍ଖାରେ ଆତ୍ମହତ୍ୟା କରିବାକୁ ଯାଉଥିଲା । ଭାଗ୍ୟ ଭଲ ଭଜହରି ପାଖଘରୁ ଶବ୍ଦଶୁଣି ଠିକ୍ ସମୟରେ ଆସି ପାଟି କରିବାରୁ ରଘୁମଣି ଉଠିଆସି ଦଉଡ଼ିଟା କାଟିଦେଲାରୁ ଝିଅଟା ବଞ୍ଚିଗଲା ।" ହଠାତ୍ ମିଷ୍ଟର ହୋତା ଚମକିତ ହେଲେ । ସେଦିନ ତାଙ୍କ ଝିଅର କଣ ଗୋଟେ ପ୍ରେମପତ୍ର ଦେଖି ଶ୍ରୀମତୀ ତାକୁ ପାଟି କରୁଥିଲେ—ମିଷ୍ଟର ହୋତାଙ୍କୁ ମଧ୍ୟ ଏମିତି ରଗାଇ ଦେଲେ ଯେ ସେ ଏତେବଡ଼ ଝିଅଟାକୁ ମାରିବାକୁ ଧାଇଁଥିଲେ । ଢେଙ୍କଣାଘରର ଅବସ୍ଥା ଶୁଣି ସେ ମନେ ମନେ ହଠାତ୍ ସେମିତି ସେଇଝୁଲୁଥିବା ଝିଅର ମୁହଁରେ ନିଜ ଝିଅ ମୁହଁକୁ ଦେଖି ଚମକି ପଡ଼ିବା ପରି ହୋଇ ସିଧାହୋଇ ବସିଲେ । ସତରେ ଯଦି ତାଙ୍କ ନିଜ ଘରେ

ଏମିତ ଅଘଟଣା ଘଟେ ! ଗାଡ଼ି ପୁନଚ୍ ନାଇନ୍‌ର ପାଣିଟାଙ୍କି ଦେଇ ଯିବା ବେଳକୁ ପ୍ରଧାନବାବୁ ଡ୍ରାଇଭରକୁ ଲକ୍ଷ୍ୟକରି କହିଲେ "ମୋତେ ଏଇଠି ଓହ୍ଲାଇ ଦେ—ସାହେବଙ୍କୁ ଯା ତାଙ୍କ ଘରେ ଛାଡ଼ିଦେଇ ଶୀଘ୍ର ଆସିବୁ ।"

ସେ ଓହ୍ଲାଇବା ବେଳକୁ ହଠାତ୍ ମିଷ୍ଟର ହୋତା ମନେ ମନେ ବ୍ୟସ୍ତ ହେଲେ "ପ୍ରଧାନବାବୁ ତାହେଲେ କଣ ଏଇଠି ରହନ୍ତି !" ପଚାରି ପାରିଲେନି ସେ ଲଜ୍ଜାରେ । ଗାଡ଼ି ଆଗେଇ ଯାଉଁଯାଉଁ ସେ ପଛ କାଚଦେଇ ମୁଣ୍ଡବୁଲାଇ ଲକ୍ଷ୍ୟକଲେ ପ୍ରଧାନବାବୁ ପଛଘରର ଗେଟ୍ ଖୋଲି ପଶିଗଲେ ।

ଗାଡ଼ି ବାଁକୁ ବୁଲି ମେନ୍‌ଗେଟ୍‌ରେ ତାଙ୍କ ଗେଟ୍ ଭିତରେ ପଶିଲା । ଓହ୍ଲାଇବା ବେଳକୁ ମିଷ୍ଟର ହୋତା ବେଶ୍ ଚକିତ ହୋଇ ବାରଣ୍ଡା ଉପରକୁ ଉଠୁ ଉଠୁ ଶ୍ରୀମତୀଙ୍କୁ ମ୍ୟାଗାଜିନ୍ ପୃଷ୍ଠାଓଲଟାଉ ଥିବାର ଦେଖି କହୁ-ଥିଲେ—"ଗାଡ଼ିଟା ପୁଣି କଣ ଗଣ୍ଡଗୋଳ ହେଲା; ଅଫିସରେ ଛାଡ଼ି ଆସିଚି ।"

ବାହାରକୁ ଗୁହିଁ ଶ୍ରୀମତୀ କହୁଥିଲେ "ତମ ଡିପାର୍ଟମେଣ୍ଟ ଗାଡ଼ି ମୁଁ ଆଉ ପଠାଇଲି ନାହିଁ—ତମେତ କାର୍‌ଟା ନେଇଗଲ ; ମୁଁ ଟିକେ ମାର୍କେଟିଂ ସାରି କ୍ଲବ ଦେଇ ଫେରିଲି ।" ଏତକବେଳେ ପ୍ରଧାନବାବୁଙ୍କ ଗାଡ଼ି ଗେଟ୍‌ଦେଇ ବାହାରିଯାଉଥିଲା । ପଚାରିଲେ "ତମେ କାହା ଗାଡ଼ିରେ ଆସିଲ ?"

ବହୁବଦନରୁ ଜାଣିଲାପରି ଭାବଦେଖାଇ ମିଷ୍ଟର ହୋତା କହିଲେ "ଏଇ ଆମ ପଛଘର ପ୍ରଧାନବାବୁଙ୍କ ସହ ।" ଆଶ୍ଚର୍ଯ୍ୟ ହୋଇ ଶ୍ରୀମତୀ କହୁଥିଲେ "ଓ ପଛବାଲା ତାହେଲେ ପ୍ରଧାନ—ମୁଁ ଜାଣେପରା ଚଷାଘର ହୋଇଥିବ—ଯେମିତି ଘରଦ୍ୱାର ପକେଇଚନ୍ତି ନା···।"

ମିଷ୍ଟର ହୋତା ତରତରରେ ଭିତରକୁ ପଶିଗଲେ ଆଉ ବେଶୀ ଯୁକ୍ତି ନ କରି ।

# ଗଳ୍ପର ଗପ

ସୁରେଶ ସହ ବହୁଦିନରୁ ଦେଖାହୋଇ ନଥିଲା । ହେଲେବି ମୁଁ ଠିକ୍ ଜାଣିଥିଲି ସେ ଏଇ ସହରରେ ଅଛି । ଏଣୁ ମୋର ଟୁର୍ ପଡ଼ିବା-ବେଳକୁ ମୁଁ ତାକୁ ଖବର ପଠାଇଥିଲି ଆମ ଅଫିସ୍ ମାଧ୍ୟମରେ ତା ସାଙ୍ଗରେ ରହିବି । ଡାକବଙ୍ଗଳା ବା ସର୍କିଟ୍ ହାଉସ୍‌ରେ ରହିବା ଗୋଟେ ପ୍ରକାର ଦଣ୍ଡ ! ଏଣୁ ଟୁର୍ ପଡ଼ିଲେ ମୁଁ ଖୋଜିବୁଲେ ଗୋଟେ ଆଶ୍ରୟ । ସୁରେଶ ଖବର ପାଇ ଫୋନ୍ କରିଥିଲା, ଅତି ହୃଦୟଖୋଲା ଆମନ୍ତ୍ରଣ— "ତୁଚ୍ଛ ସିଧା ଆସିବୁ ଘରକୁ, ଖବର କଣ ପଠାଉଛୁ ? ତୋ ଭାଭୀ ଜଗିବସିଚି ତୋ ଆସିବା ବାଟକୁ ।" ଭାବିଲି ବେଶ୍, ଏ ଦୁଇ ତିନିଟା ଦିନ ସରକାରୀ କାମ ଆଉ ବୋରିଂ ହେବନି । ମୁଁ ପହଞ୍ଚିଗଲି ସନ୍ଧ୍ୟା ସାତଟା ସୁଦ୍ଧା ।

କାହିଁ, ଘରେ କଣ ସବୁ ଶୁନ୍‌ଶାନ୍ ! ଜାପ୍, ସେଥିରେ ପୁଣି ଡ଼ିଜେଲ୍ ଜାପ୍‌ଟା ଧରି ଘର ସାମ୍ନାରେ ଏତେ ସମସ୍ତ ଘର୍ ଘର୍ ଶବ୍ଦ । ତା'ପରେ ସ୍ୱାକୁ ତାକୁ ଉତ୍କଣ୍ଠ ଘର ଦ୍ୱାରମୁହଁରେ ବେଲ୍ ବଜାଇଲା ପରେ ବି କାହାରି ଶାଡା ଶବ୍ଦ ନାହିଁ । ବାହାରୁ ଧାଇଁ ଧାଇଁ ଆସି ଗେଟ୍ ଖୋଲି ପିଲାଟିଏ କହିଲା "ସାର୍ ଆପଣ ଜାପାନବାବୁ ନା ?" ଉତ୍ତରକୁ ଅପେକ୍ଷା ନ କରି

ଘର ଖୋଲୁ ଖୋଲୁ କହିଲା—"ଆସନ୍ତୁ, ବାବୁ ଆଉ ମା' କଣ ବାଧରେ ପଡ଼ି ଯାଇଚନ୍ତି ବାହାରକୁ, ଫେରିଆସିବେ ଅଧଘଣ୍ଟାରେ । ବାରମ୍ବାର କହିଯାଇଚନ୍ତି ଆପଣ ଆସିବେ—"

ତା' କଥାରେ ବାଟ ବାଜୁନଥିଲା । କହି ଚାଲିଥିଲା ସେ ଅନର୍ଗଳ—"ଆସନ୍ତୁ ସାର୍ । ମୁଁ ଟିକେ ଚା'ପତ୍ର ଆଣିବାକୁ ଯାଇଥିଲି, ଏଇ ପାଖ ଦୋକାନରୁ ।"

ସତେ ଯେପରି କିଛି ସମୟ ପାଇଁ ଘର କାମରେ ବାହାରକୁ ଚାଲିଯାଇଥିବାଟା ତାର ଗୋଟେ ଦୋଷ ହୋଇଯାଇଛି । ତାକୁ ସେ ଏଇ କଥାରେ ଢାଙ୍କି ପକାଇବାକୁ ଚେଷ୍ଟାକରୁଚି ।

"ସାର୍ ମୁଁ ଗାଡିରୁ ଜିନିଷ-ପତ୍ରଗୁଡ଼ା ନେଇ ଆସୁଚି—ସେଇ ଘରଟାରେ ସାର୍ ଆପଣ ରହିବେ । ତାର ସେ ପାଖକୁ ବାଥ୍‌ରୁମ୍ ଅଛି । ସାର୍ ମୁଁ ଜିନିଷ ନେଇ ଆସୁଚି," କହି ସେ ବାହାରକୁ ଦୌଡ଼ିଲା ।

ମୁଁ ମନେ ମନେ ବେଶ୍ ଆମୋଦ ଅନୁଭବ କରୁଥିଲେ । ଧୂଆ-ଧୋଇ ହୋଇ ଲୁଗା ବଦଳାଇ ଡ୍ରଇଂ ରୁମ୍‌ରେ ବସି ମୁଁ ବ୍ରିଫ୍‌କେଶ ଖୋଲି ପକେଟ୍ ରେଡ଼ିଓରୁ ନିଉଜଟା ଶୁଣି କଫି ଖାଉଁ ଖାଉଁ ସୁରେଶ ଓ ତା ସ୍ତ୍ରୀ ବ୍ୟସ୍ତ ହୋଇ ପଶିଆସିଲେ । କି ବ୍ୟସ୍ତତା ଶ୍ରୀମତୀଙ୍କର—"ଆମେ ବାଧହୋଇ ଯାଇଥିଲୁ ; ନ ବସି ତରତରରେ ପଳାଇ ଆସିରୁ ।"

ମୁଁ ବାଧାଦେଇ କହିଲି "ଓ୍ୟାଃ, ସେଥିରେ କଣହେଲା । ଏମିତି ଅଦରକାରୀ ବନ୍ଧୁଗୁଡ଼ା ଜୁଟିବେ ବୋଲି ଆପଣଙ୍କ ନଜର କଣ ଆଉ କିଛି କାମ ନାହିଁ ?"

ସେ ଆହୁରି ଲଜେଇ ଯାଇ କହିଲେ "ନାଇଁମ, ୟାଙ୍କ ବସ୍ ଚୌଧୁରୀବାବୁ; ଆପଣ ତ ଜାଣିଥିବେ ମାଲଦ୍ରି ଚୌଧୁରୀଙ୍କୁ ।"

"ଓ ହଁ ହଁ, ସେ ବେଙ୍କବାଲାତ ? ଆମଠୁଁ ବର୍ଷେ ଖଣ୍ଡେ ସିନୟର ଥିଲା ବୋଧେ ।" ମୁଁ ସୁରେଶ ଆଡ଼କୁ ଚାହିଁଲି । ସୁରେଶ ବାକିତକ କହୁକହୁ ଯାହା ଜାଣିଲି—

"କାଲି ଗୋଟେ ପାର୍ଟି ଥିଲା ମାଳାଦ୍ରି ଘରେ । ମାଳାଦ୍ରିର ଶାଶୁଙ୍କର ମୃତ୍ୟୁପରେ ଏ ମାସଟା ଧରି ମାଳାଦ୍ରି ବ୍ୟସ୍ତଥିଲା । ଏଣୁ ସୁରେଶ ଉପରେ ଅଫିସର ସବୁ କାମର ଭାର । କାଲି ମାଳାଦ୍ରି ତା' ଘରେ ଗୋଟେ ଫ୍ଲେଟ-କାଟର ପାର୍ଟି କରିଥିଲା । ପ୍ରାୟ ସମସ୍ତେ, ତା ବେଙ୍କ ଷ୍ଟାଫ୍ ଆଉ କିଛି ଅଫିସର ଓ ଇଣ୍ଡଷ୍ଟ୍ରିବାଲା, ଯେଉଁମାନଙ୍କ ସହ ଅନ୍ତରଙ୍ଗତା ଜମିଯାଇଥିଲା ଆସିଥିଲେ ।"

ସବୁ ଶୁଣି ମୁଁ କହିଲି "ମାଳାଦ୍ରିର ସ୍ତ୍ରୀ ତ ବୋଧହୁଏ ଏଠି ରହନ୍ତି, ନାଇଁ ନାଁ—ସେ ପରା ଲେକ୍ଚରର ନା କଣ ?"

"ହଁ ସେ ସେଠି ବଡ ସହରରେ—ଚେଷ୍ଟା କଲେ ବଦଳି ହେବା କିଛି ଅସମ୍ଭବ ନୁହେଁ ? ହେଲେ ମାଳାଦ୍ରିବାବୁ ଏଠାକୁ ବର୍ଷେରୁ ବେଶୀ ହେବ ଆସିଲେଣି, କାଇଁ କାହାର କିଛି ଚେଷ୍ଟା ଦେଖୁନି" ଏତକ କହି ଟିକଏ ଚୁପ୍‌ରହି ପୁଣି କହିଲା—"ଗ୍ଲାଡ୍, ପରେ ଶୁଣିବୁ ସେ କଥା, ଭାରି ଇଣ୍ଟରେଷ୍ଟିଂ ।"

"ଇଣ୍ଟରେଷ୍ଟିଂ ମାନେ କଣ ତୋ ଗପର ଗୋଟେ ଖୋରାକ ମିଳି ଗଲାକ ?" ସୁରେଶ ହସିଦେଇ କଣ କହିବାକୁ ଯିବାବେଳକୁ ଶ୍ରୀମତୀ ଖାଇବାପାଇଁ ଡ଼ାକି ବସିଲେ । ସୁରେଶ ପଚାରିଲା 'ଏଇଠିକୁ ଆଣୁନ ?' ଶ୍ରୀମତୀ ମୋ ପାଇଁ ଖାଇବା ଆଣୁଆଣୁ କହିଲେ, "ଆମେ ଦୁଇଜଣ ତାଙ୍କଘରେ ବାଧ୍ୟବାଧକତାରେ ଏଣୁତେଣୁ ଖାଇ ଆସିଚୁ—"

ସୁରେଶ ବାଧାଦେଇ, କହିଲା "ନା ନା ମୁଁ ଖାଇବି ଢଅ ସେଇଠି ରଖ । ମୋ ପାଇଁ ଆଉ ଗୋଟେ ପ୍ଲେଟ ଆଣ ।"

ଖାଉ ଖାଉ ପୁରୁଣା ଗପ, ସ୍କୁଲର ମାଷ୍ଟ୍ରଙ୍କ ଠାରୁ ଆରମ୍ଭ କରି ବନ୍ଧୁ ସହପାଠୀ ପର୍ଯ୍ୟନ୍ତ ଲମ୍ବିଗଲା । ଅଇଁଠା ବାସନ ଉଠିଗଲା ପରେ ମୁଁ ସୋଫାରେ ଲମ୍ବିଗଲି । ସେମାନେ ଦୁଇଜଣ ବସି ଗପ କରୁ କରୁ ରାତି ବେଶ୍ ଡେରି ହୋଇ ଯାଇଥିଲା । ସୁରେଶ କହିଲା "ଯା ଶୋଇପଡ଼, ତୋ ଆଖି ମାଡ଼ି ମାଡି ପଡ଼ିଲାଣି"—

ମୁଁ ଉଠୁ ଉଠୁ କହିଲି "କଣ ଖଣ୍ଡେ ବହି କି ମାଗାଜିନ୍ ଖଣ୍ଡେ ଦେଲୁ"—କହୁ କହୁ ମନେ ପଡ଼ିଗଲା ତା ଗତ ଗପଟା କଥା, ବାହାରିଥିଲା 'କଥା'ରେ । ମୁଁ କହିଲି "ତୋର ସେ ନଭେମ୍ବର 'କଥା' ଗପଟା ସୁନ୍ଦର ହୋଇଚି ।" କହୁ କହୁ ମୁଁ ସେଇ ସାଇଡ଼ ଟେବୁଲ ଉପରେ ମାଗାଜିନ୍ ଓଲଟାଉଥିଲି ।

ସୁରେଶ କହିଲା "ତୋର ସକାଳୁ କୁଆଡେ ଯିବାର ଅଛି ନା ? ଶୋଇପଡ଼ ଯା" । ମୁଁ ମାଗାଜିନ୍ ଯାକ ଥାକ କରି ରଖି ତା ପାଖରେ ପଡ଼ିଥିବା ଖାତାଟା ଓଲଟାଇଲି ବେଳକୁ ଦେଖିଲି, ସେଇଟା ଗୋଟେ

ପାଣ୍ଡୁଲିପି । ସୁରେଶ ଆଗେଇ ଆସି ହାତରୁ ଖାତାଟା ନେଇ କହିଲା "ବେଶ୍ ଏଇଟା ନେ, ଗୋଟେ ଗପ ଆରମ୍ଭ କରିଚି ; ସରିନି ଏ ପର୍ଯ୍ୟନ୍ତ । କହୁନଥିଲି ମଜାକଥା ମାଳାଦ୍ରୀ ନେଇ ; ସେଇଟା ତୁ ପଢ଼; ଅଧା ଲେଖାଟା ; କାଲି ବାକିତକ କହିବି ।" ମୁଁ ସେଇଟା ଧରି ଶୋଇବାକୁ ଗଲି ।

ହିମାଦ୍ରି ହାତଘଣ୍ଟାକୁ ଚାହିଁଲା ; ସାଢ଼େ ପାଞ୍ଚଟା । ରୋଗୀ ବେଶ୍ ନିଦ ଇଞ୍ଜେକ୍ସନ୍‌ରେ ଶୋଇ ଯାଇଚି । ବାପା ନିଶ୍ଚୟ ସାତଟା ସୁଦ୍ଧା ପହଞ୍ଚିବେ । ତାଙ୍କର ପ୍ରାୟ ସମୟର ବ୍ୟତିକ୍ରମ ହୁଏନି । ସପ୍ତାହରେ ଦୁଇଦିନ ବେଶ୍ ସେ ଉପଭୋଗ କରନ୍ତି । ଚାଲି ଚାଲି ସକାଳୁ ଚଷ-ଗାଁକୁ ଯାଇ ସନ୍ଧ୍ୟାବେଳେ ଫେରନ୍ତି । ଚାକିରି ପରେ ସମସ୍ତଙ୍କର ଅନୁରୋଧ ଏଡ଼ି ସେ ଠିକ୍ କଲେ ମଫସଲରେ ଯାଇ ରହିବେ । ଆଜ ସ୍ୱାମୀ ସ୍ତ୍ରୀ ବେଶ୍ ଆରାମରେ ଗାଁରେ (ଗାଁ କାହିଁକି ହେବ ; ରାସ୍ତାଘାଟ ଓ ଆଲୁଅ ଇତ୍ୟାଦିର ସୁବିଧା ହେବା ପରେ ଟାଉନ କହିଲେ ଚଳେ) ଆରାମରେ ଅଛନ୍ତି ।

ବର୍ତ୍ତମାନ ବିଜୟ ନିଶ୍ଚୟ ତା ଅଫିସରୁ ଆସି ରମା ସହ ବସି ଚା ପର୍ବରେ ବ୍ୟସ୍ତଥିବ, ସେଇ ସୁଇମିଂପୁଲ ପାଖ ଲନ୍‌ରେ । ରାତି ନଅଟା ପୂର୍ବରୁ ସେତ ତା ବସାକୁ ଫେରେନି । ଅଫିସରେ ଚେଷ୍ଟା କରି କରି ତାକୁ ଫୋନରେ ପାଇନି । ଏଇଟା ଠିକ୍ ସମୟ । ଘରକୁ ଗଲେ ଧିଆ ଧୋଇ ହେଉ ହେଉ ଟ୍ରଙ୍କ ଲାଇନ୍‌ଟା ବି ମିଳିଯିବ । ଟେଲିଗ୍ରାମଟା ମିଳୁ ମିଳୁ କାଲି ସକାଳ ହୋଇଯିବ ନିଶ୍ଚୟ । ବିନିକୁ ଫୋନ କରିବାକୁ ହେବ । ସୁରେଶଟା ଆସିଲାନି ଏପର୍ଯ୍ୟନ୍ତ । ଅଫିସର ଅବଶ୍ୟ ସବୁ କାମ ସାରି ଆସୁ ଆସୁ ଡେରିହେବ । ନାଁ ସେ ଆଉ ଅପେକ୍ଷା ନକରି ନର୍ସକୁ ସବୁ ବୁଝାଇ ବାହାରକୁ ଆସିବା ବେଳକୁ ରମେଶ ଠିକ୍ ପହଞ୍ଚି ଯାଇଚି ଅଫିସ

ବନ୍ଦ କର । ରମେଶ ପ୍ରତି ତାର ଏକ ଅନ୍ତରଙ୍ଗତାର ଭାବ ହେଲା । ସେ ତା ପିଠିରେ ଥାପୁଡ଼େଇ ଦେଇ ଆଗେଇ ଯାଉ ଯାଉ କହିଲା, 'ନର୍ସ ସବୁ ଔଷଧ ଦେବ, ତମେ ଖାଲି ଟିକେ ବସିଥିବ ।' ରମେଶ ତାକୁ 'ବ୍ୟସ୍ତ ହେବେନି ସାର୍ ; ମୁଁ ଅଛି' କହି ତରତରରେ ସିଡ଼ି ଉପରକୁ ଆଗେଇଗଲା ।

ହିମାଦ୍ରି ସ୍କୁଟ୍‌ର ଷ୍ଟାର୍ଟ୍ କରୁକରୁ ରମେଶ ପ୍ରତି ତା'ର ସେଦିନର ବ୍ୟବହାରରେ ଲଜ୍ଜା ଅନୁଭବ କଲା । ରମେଶର ବା ଦୋଷ କଣ ! ସେ ଠିକ୍ କଥା କହିଥିଲା । ଧୀରେ ଧୀରେ ହିମାଦ୍ରି ଅଫିସରେ ଅତି ରୁକ୍ଷ ଅଫିସର ଭାବେ ସମସ୍ତଙ୍କର ଶ୍ରଦ୍ଧା ହରାଇଆସୁଥିଲା । ତାର ସ୍ୱାଭାବିକ ନମ୍ର ଓ ଭଦ୍ର ବ୍ୟବହାରରେ ପ୍ରଥମେ ସମସ୍ତଙ୍କୁ ମୁଗ୍‌ଧ କରିଥିବା-ବେଳେ ଧୀରେ ଧୀରେ ସବୁଥିରେ ଅସ୍ଥିରତା, ସାମାନ୍ୟ କଥାରେ ଉତ୍ତେଜିତ ହେବା ଦେଖି, ରମେଶ ଠିକ୍ ଅନୁମାନ କରି ନେଇଥିଲା ସାର୍‌ଙ୍କର ଅବସ୍ଥାଟା । ଏମିତି ଏକ ନରମ ମୁହୂର୍ତ୍ତ ଦେଖି ସେ କହିଥିଲା, 'ସାର୍ ଆପଣ ଫେମିଲି ନେଇ ଆସନ୍ତୁ ସୁବିଧା ହେବ'— ହିମାଦ୍ରି ମୁହଁରେ ହସ ଦେଖି ପୁଣି ଯୋଡ଼ି ଦେଇଥିଲା— 'ଆମେ ସବୁ ଗାଳିଖାଇବାରୁ ମୁକ୍ତ ହେବୁ ।'

ହଠାତ୍ କଥାଟା ହିମାଦ୍ରିକୁ ବାଧିଲା ପରି ଲାଗିଲା—ସେ ଗମ୍ଭୀର ହୋଇଗଲା । ସୁରେଶ ଭାବିଲା, ବୋଧହୁଏ କହୁକହୁ ସେ ଅନ୍ତରଙ୍ଗତାର ସୁଯୋଗ ନେଇ ବେଶି କହିପକାଇଲା । କହିଲା—

'ସାର୍ କିଛି ମନେ କଲେକି ?'

ହିମାଦ୍ରି ତଥାପି ନିଜକୁ ସଜାଡ଼ି କରିପାରି ନ ଥିଲା । ତା ଅନ୍ତରର ଘାଆଟାକୁ ଲୁଚାଇ ରଖିବାରେ ତା ମନରେ ଦୈନନ୍ଦିନ ଅତ୍ୟାଚାରର ପ୍ରତିଫଳନ ଉପରେ ହଠାତ୍ ଅଫିସର ଷ୍ଟାଫ୍ ଯେପରି ସୁରେଶ ମୁହଁରେ ପ୍ରତିବାଦ କରି ଉଠିଥିଲା, ସେ ଅସହାୟତା ବୋଧକରି ସେହିପରି ଗମ୍ଭୀର କଣ୍ଠରେ କହିଲା—'ରମେଶବାବୁ ଆପଣ ବର୍ତ୍ତମାନ ଆସନ୍ତୁ ।' ରମେଶ ବେଶ୍ ଅପମାନିତ ହୋଇ ଫେରିଆସିଥିଲା । ସେଇ ପ୍ରଥମେ; ଯେତେବେଳେ ହିମାଦ୍ରି ଆସି ଜଏନ୍ କରିଥିଲା, ଜବରଦସ୍ତ ରମେଶକୁ ପ୍ରାୟ ପ୍ରତି ସନ୍ଧ୍ୟାରେ ସାଙ୍ଗରେ ନେଇ ତା ଘରେ ବସି ସମୟ କାଟୁଥିଲା । ରମେଶ ଘରେ ଭାବୀଙ୍କ ହାତରୁ ବହୁବାର ଚା' ଜଳଖିଆଠାରୁ ଡିନର ମାଗି ଖାଇବା ପର୍ଯ୍ୟନ୍ତ ଅନ୍ତରଙ୍ଗତା ଧୀରେ, ଧୀରେ ଦୂରତ୍ୱ ବଢ଼ିବାର ସୀମା ଆଜି ଯେପରି ପାର ହୋଇଗଲା । କିନ୍ତୁ ଆଜି ଅଦିନରେ ରମେଶ ଯେମିତି ତାର ସାହସ, ତାର ଆଶ୍ରୟ । ବନ୍ଦନା ସିଧା ମନାକରି ଦେଲା ସେ ସହର ଛାଡ଼ି ଆସିପାରିବନି । ବ୍ୟାଙ୍କ ତରଫରୁ ସହରର ପୁରା ଫର୍ନିସ୍ଡ଼ ଘର, ତା'ପରେ ସେଇଟା ପୁଣି ବନ୍ଦନାର ନିଜ ହୋମ୍ ଟାଉନ । ମା' ବାପା, ବାନ୍ଧବବାନ୍ଧବୀ କେହି ତାକୁ ଆକର୍ଷଣ କରିପାରି ନଥିଲେ । ଅବଶ୍ୟ ବାପା ଚାକିରି ଜୀବନରେ ବାହାରେ ବାହାରେ ରହୁଥିବାରୁ ନିଜ ଗାଁରେ ବନ୍ଦନାର ହୁଏତ ବାନ୍ଧବବାନ୍ଧବୀ କେହି ନାହାନ୍ତି, ତଥାପି ବାପା-ମା ଥିବା ସହରରେ ସ୍ୱାମୀର ପୋଷ୍ଟିଂ ଯେକୌଣସି ଝିଅ ପକ୍ଷରେ ଆନନ୍ଦର କଥା । କିନ୍ତୁ ବନ୍ଦନା ଅନ୍ୟ ଉପାଦାନରେ ଗଢ଼ା । ତା ଚାକିରି, ପୁଅର କନ୍‌ଭେଣ୍ଟ, ଅନ୍ୟାନ୍ୟ ନାନା ସୁବିଧା ଅସୁବିଧା ଦେଖାଇ ତାର ଜିଦ୍ ସେ ସେଇ ସହର ଘରେ ରହିବ । ହିମାଦ୍ରି ତ ପ୍ରାୟ ଯିବା ଆସିବା କରିବ, ଅସୁବିଧା କଣ ? ଚେଷ୍ଟା କରିଥିଲେ ହୁଏତ ବନ୍ଦନାର ବଦଳିଟା ବିଶେଷ ଅସୁବିଧା ହୋଇନଥାନ୍ତା, ଆଉ ପୁଅ କନ୍‌ଭେଣ୍ଟରେ ନପଢ଼ି ଏଠି ସ୍କୁଲରେ ପଢ଼ିପାରିଥାନ୍ତା । ଅସୁବିଧା ଅବଶ୍ୟ ହିମାଦ୍ରିର ହେଲାନି, କାରଣ ଖାଇବା ପିଇବା କଥା ଚାକର

ହାତରେ ସବୁ ତା ଶାଶୁ ବୁଝି ଦେଉଥିଲେ । ପ୍ରାୟ କାମ ନେଇ ସପ୍ତାହରେ ଦୁଇ ଥର ଯିବାକୁ ପଡ଼େ ସହରକୁ, ରବିବାରଟା କଟାଇ ସେ ଫେରେ । ଏମିତି ତିନିଟା ବର୍ଷ କଟାଇ ଦେଲେ ପୁଣି ସେ ହେଡ୍ ଅଫିସକୁ ଫେରିଯିବନି କି ?

ଏସବୁ ସତ୍ତ୍ୱେ ତା ମନରେ ସବୁବେଳେ ଗୋଟେ କଣ୍ଟା । ବିଜୟର ପ୍ରାୟ ବୃର ପାଞ୍ଚ ମାସ ହେଲା କିଛି ଖବର ନାହିଁ । ବାପା ମାଙ୍କୁ ଭଣ୍ଡେଇ ଜମା କରି ସେବ ନିଶ୍ଚିନ୍ତ ଯେପରି ।

ସେଇଠି ଦଶ କି: ମି: ଦୂରରେ ଭାଇ ଭଉଣୀ ଅଛନ୍ତି । ବିଜୟ ବୋଧହୁଏ ଏ ବୃର ପାଞ୍ଚ ମାସ ଭିତରେ ଥରେ ହେଲେ ଆସିନି କି ଫୋନଟିଏ ବି କରିନି । ସେଇ ମୀରା ଅପା ଘର ବାହାଘରରେ ବିଜୟବାବୁ ସ୍ତ୍ରୀଙ୍କୁ ଧରି ତାଙ୍କ ଶଶୁରଙ୍କ ଏନି ନେଇ ଆସିଥିଲେ । ସେଇ ପାର୍ଟିରେ 'ହେଲୋ ହେଲୋ - କମିତି ଅଛ' ବେଶ୍ ସେତିକି । ଶଳା ଭାଉଜଙ୍କୁ କଣ ହପଦ ଥଟ୍ଟା କରି କହିବା ବେଳକୁ ତାଙ୍କ ମୁହଁଟା ବି ଆମ୍ବିଳିଆ ଦେଖି ବିମଳା ତାକୁ ଚିମୁଟି ଦେଇଥିଲା । ସେଇ ବୋଧହୁଏ ଶେଷ ଦେଖା । ଏଠିକୁ ତ ମାଳାଦ୍ରି ଆସିବା ଦିନଠୁ ବିଜୟ ଆସିନି । ବାପା ମା କମିତି ଅଛନ୍ତି ଦେଖିବାକୁ ଆସିନି । ଚିଠିପତ୍ରରେ ଖବର ନେଉଥିବ ପରା, ସେ ଚେଷ୍ଟା କରେନି ମୁଣ୍ଡ ଖେଳାଇବାକୁ । ହେଲେ ଆଜ କିନ୍ତୁ ପୁଅକୁ ଖବର ଦେବାକୁ ହେବ । 'ମା'ର ହଠାତ୍ ଏଇ ଅବସ୍ଥା—ଗୋଟିଏ ମାତ୍ର ପୁଅ ।'

ବିଜୟ ବିମଳା ସବୁ ଆସି ସେବାରେ ଲାଗି ପଡ଼ିଲେ—ମଝିରେ ବିଜୟ ଯାଇ ସ୍ତ୍ରୀ ପିଲାଙ୍କୁ ନେଇ ଆସିଥିଲା ଦିନକ ପାଇଁ । ସବୁ ସତ୍ତ୍ୱେ ମା' ଚାଲିଗଲେ, ସେଇ ଡାକ୍ତରଖାନାରୁ ଘରକୁ ଫେରିନାହାନ୍ତି । ବିଜୟ

ସବୁ କାମକଲା । ତେରଦିନ କାମସାରି ପରଦିନ ପୁଣି ଫେରିଗଲା ସ୍ତ୍ରୀ ପିଲାଙ୍କୁ ନେଇ । ବନ୍ଦୀ କିନ୍ତୁ ଯାଇପାରିଲାନି ହଠାତ୍ ବାପାଙ୍କୁ ଛାଡ଼ି, ଛୁଟୀ ବଢ଼ାଇବା ପାଇଁ ଟେଲିଗ୍ରାମ୍‌ଟେ କରି ସେ ବ୍ୟସ୍ତଥିଲା ବାପାଙ୍କ ପାଇଁ ।

ବାପା ସ୍ୱାସ୍ଥ୍ୟପ୍ରଜ୍ଞ ଲୋକ । ବିଶେଷ ଆତୁର ହୋଇ ନଥିଲେ ସେ । ବୟସ ପଚସ୍ତରି ପାର ହୋଇଯାଇଥିଲା । ସବୁଦିନ ମଉଜ ମଜଲିସ୍ ଆଉ ହସଖୁସିର ସଂସାର ତାଙ୍କର । ପିଲାଟିଦିନରୁ ଖେଳ କସରତ୍ ସଙ୍ଗ ସକାଳୁଉଠି ବୁଲିବା ତାଙ୍କର ବହୁ ବର୍ଷର ଅଭ୍ୟାସ । କାହାରି ପାଇଁ ସେ ଅପେକ୍ଷା କରନ୍ତିନି । ସ୍ତ୍ରୀ ଉଠିବା ଆଗରୁ ସେ ନିତ୍ୟକର୍ମ ସାରି ଟିକିଏ ବୁଲିଆସି ଥାଆନ୍ତି । ବଗିଚା କରିବା ତାଙ୍କର ଏକ ଝୁଙ୍କ । ଋତୁଆସ୍ତାରି କାଲପରେ ଗୃହଘରର ଏକ ସଉକ୍, ବେଶ୍ ସମୟ କଟେ । ତା ସାଙ୍ଗକୁ ଶରୀରଚର୍ଚ୍ଚା ମଧ୍ୟ ଠିକ୍ ଚାଲେ । ଖୁବ୍ ଶୀଘ୍ର ସେ ନିଜକୁ ସମ୍ଭାଳି ନେଲେ । ରୁଟିନ୍ ଆଗପରି ଆରମ୍ଭ ହେଲା ।

ବନ୍ଦୀ ଚେଷ୍ଟା କଲା, ଅନୁମାନ କରିବାକୁ ଘରର କାମରେ ମା'ଙ୍କର ଯେତେ ସବୁ ଦାନ, ସବୁକୁ ପୂରଣ କରିବା ପାଇଁ । କିନ୍ତୁ ଧୀରେ ଧୀରେ ଦେଖିଲା ତାର ରହିବା କିଛି ଦରକାର ନାହିଁ । ବାପା କୌଣସି ପାଇଁ ଅପେକ୍ଷା କରନ୍ତି ନାହିଁ ସେ ଜାଣେ; ଏଣୁ ମା' ଆଜି ନାହିଁ ବୋଲି ବାପାଙ୍କ ଜୀବନରେ ଅସୁବିଧା କଣ, ସେ ଖୋଜିବାକୁ ଯାଇ ବ୍ୟସ୍ତ ହୋଇ ପଡ଼ିଲା ।

ଏତିକରେ ଗପଟା ଖଣ୍ଡିଆ ହୋଇ ରହିଥିଲା । ବହୁ ବନ୍ଧ କରୁକରୁ ମୁଁ ଶୋଇବାକୁ ଯାଉଥିଲି 'ଏଇ ପିତା-ମାତା ଯେଉଁମାନେ ଏତେ ସ୍ୱାବଲମ୍ବୀ, ତାଙ୍କର ସନ୍ତାନ ବମା । ଏଣୁ ସହରରେ ରହିବାଟା ଅସ୍ୱାଭାବିକ ବା କଣ ?'

ସକାଳୁ ବଛଣାରେ ଚା ଖାଇବା ମୋର ଅଭ୍ୟାସ । ଘରର ପିଲାଟି ଟ୍ରେରେ ଚା ସରଞ୍ଜାମ ଧରି ପଶିଆସିଲା, ତା ପଛେ ପଛେ ସୁରେଶ ଆଉ ଶ୍ରୀମତୀ । ଚେୟାର ଦୁଇଟା ଟାଣି ଚା ବନେଇଲେ ଶ୍ରୀମତୀ । ଚା ଖାଉଁ ଖାଉଁ ସୁରେଶ ନଜରକଲା ମୁଣ୍ଡଉପରେ ଥିବା ଖାତାଟାକୁ, କହିଲା—ବାକି କଥାଟା ହେଉଛି, ପଅରଦିନର 'ବଡ଼ାଖାନା' । ମୁଁ କହିଲି 'ମାନେ ?'

ସୁରେଶ ହସି କହିଲା "ବମାଦେବୀ ମାନେ ବହିର ବମାଦେବୀ ହମାଦ୍ରିର ସ୍ତ୍ରୀ ଠିକ୍ କଲେ ସେ ଆଉ ଫେରିଯିବେନି । ତାଙ୍କ ବଦଳି ପର୍ଯ୍ୟନ୍ତ ଛୁଟିନେଇ ଏଇଠି ରହିବେ, ଆଉ ସେଇଥିପାଇଁ ମାଲାଦ୍ରିର ପାର୍ଟିଟା ।"

